ନେହେରୁ-ବାଳ-ପୁସ୍ତକାଳୟ—୧୪

( ପ୍ରଥମ ସ୍ତର )

# ବହୁତ ଦିନ ତଳେ...

ଏମ୍. ଶ୍ରେକ୍ସି ଓ ପି. ଏମ୍. ଯୋଷୀ

ଛବି : ପୁଲକ ବିଶ୍ୱାସ, ଅନୁବାଦକ : କାଳନ୍ଦୀଚରଣ ପାଣିଗ୍ରାହୀ

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ନୂଆ ଦିଲ୍ଲୀ



First Published 1972 (Saka 1894)
Second Edition 1983 (Saka 1905)



Rs. 2.50

ONCE UPON A TIME—Part I (Oriya)

PUBLISHED BY THE DIRECTOR, NATIONAL BOOK TRUST, INDIA
NEW DELHI-110016 AND PRINTED AT JANTY PRINTING WORKS,
JAMA MASJID, DELHI-110006

# ପ୍ରାଚୀନ ସହର ମହେଞ୍ଜୋଦାରୋରେ

ମହେଞ୍ଜୋଦାରୋ ସହର । ଦିନ ଗଡ଼ି ଉପରଓଳ ହୋଇ ଆସୁଛି । ଧାଡ଼ି ଧାଡ଼ି ହୋଇ ଲମ୍ବିଛି ଇଟା ତିଆରି କୋଠାଘର । ଗ୍ରୀଷ୍ମର ପ୍ରବଳ ଖରାରେ ସେଗୁଡ଼ିକ ତାତିଗଲାଣି । ଏ କୋଠାରେ ଝରକା ମୋଟେ ନ ଥାଏ ଓ ଦୁଆରଗୁଡ଼ିକ ମଧ୍ୟ ମୁହାଁଇଛି ଗୋଟିଏ ମଝି ଅଗଣାକୁ । ସେହି ଅଗଣାରେ ବସି ସ୍ତ୍ରୀଲୋକମାନେ ପରିବା କାଟନ୍ତି, ମସଲା ବାଟନ୍ତି, ବାସନ ମାଜନ୍ତି, ପୁଣି ଘରକାମ ସରିଲେ ଗପସପ କରୁକରୁ ସୂତା କାଟନ୍ତି । ତାଙ୍କ ପିଲାମାନେ ତାଙ୍କୁ ଘେରି ସେହି ଅଗଣାରେ ଖେଳୁଥାନ୍ତି । ଅଗଣାଟିର ଗୋଟିଏ କଣରେ, ତଳାଣ ଉପରେ ବଙ୍କାଟେଢ଼ା ଗାର ଟାଣି ତାରି ଉପରେ ଖେଳନ୍ତି ସେମାନେ ହରେକ କିସମର ଖେଳ ।

ଖରାତାତି ଆହୁରି କାଟେ । ବର୍ତ୍ତମାନ ବି ସେହି ଅଗଣାରେ ଛାଇଜାଗା ରହିଥାଏ ଅତି ଅଳ୍ପ । ସିଲ୍ ମୋହର କଟାଳି ବଗ୍ରେଚନ ତା' ଦୋକାନରେ ଗୋଟିଏ ମସିଣା ଉପରେ ଟିକେ ଶୋଇପଡ଼ିଥାଏ । ତା'ର ସ୍ତ୍ରୀ ମଧ୍ୟ ଟିକିଏ ଢଳେଇଯାଏ । ଦିନ ଆହାର ଲାଗି ସୁଜି, ତରକାରି ଓ ଯଅବୁଟି କରୁ କରୁ ସେ ଟିକିଏ ଢଳେଇଯାଏ । ଭୋଜନରେ ବସିବା ଆଗରୁ ପରିବାରଟିର ସମସ୍ତେ ସବୁଦିନେ ଗାଧୁଅନ୍ତି । ଗ୍ରୀଷ୍ମ କାଳେ ବି ପାଣିର ଅଭାବ ନ ଥାଏ । କାରଣ ଏବେ ଯେଉଁ ନଦୀକୁ ଆମେ ସିନ୍ଧୁ ନଦୀ କହୁଁ, ତାହାରି କୂଳରେ ଗଢ଼ାହୋଇଥାଏ ଏହି ସହରଟି ।

ବୟସ୍କମାନେ ନିଦରେ ଶୋଇଥିଲେ ବି ପିଲାଏ ତାଙ୍କ କାମରେ ମାତିଯାନ୍ତି । ବଗ୍ରେଚନର ଛୋଟ ପୁଅ ହରପ ବୁଲି ବୁଲି ଯାଇ ପହଞ୍ଚିଲା ତା' ବାପାଙ୍କ କାରଖାନାରେ । ସେଠି ଖଡ଼ିପଥର ଖଣ୍ଡମାନ ଗଦାହୋଇଥାଏ । ଏ ଖଡ଼ିପଥର ଧଳା ଚକ୍‌ଚକ୍ ପଥର । ବଗ୍ରେଚନ ତାକୁ ସମାନ କରି ଛୋଟ ଛୋଟ ଚଉକୁଣିଆ ବା ଆୟତାକାର କରିନିଏ । ତା'ରି ଉପରେ ଜୀବଜନ୍ତୁଙ୍କ ନକ୍ସା । ତା'ତଳେ ଲେଖେ ଗୋଟିଏ ଛୋଟିଆ ଚିହ୍ନ-ଲେଖା । ଏହାହିଁ ହେଲା ବେପାରୀ କାରବାରୀଙ୍କ ସିଲ୍ ମୋହର—ତାଙ୍କର ନିଜ ନିଜ ମାର୍କାଚିହ୍ନ । କୁମ୍ଭାର, ଇଟାଗୁଣ୍ଠୀ, ଭଙ୍ଗା ତିଆରିକଲାବାଲା ବା ପଥରକଟାଳି ଆଦି ସହରର ସବୁ ଜାତିର କାରିଗରଙ୍କ ମଧ୍ୟରେ



ସିଲ୍‌ମୋହର କଣ୍ଟାଲର ମର୍ଯ୍ୟାଦା ବୋଧହୁଏ ଅଧିକ ଥିଲା—ତାହାର କାରଣ, ସହରର ପ୍ରାୟ ପ୍ରତି ଲୋକ ନିଜ ସିଲ୍‌ମୋହର ଗଢ଼ାଉଥିଲେ ।

ବସ୍ରୋଚନର ଦୋକାନଟି ଖୁବ୍ ଜନପ୍ରିୟ । ଉତ୍ତମ କାରିଗରର ଉଚିତ ମୂଲ୍ୟ ଦେଇ-ପାରିବାଭଳି ବେପାରି ତା' ପାଖରେ କାମ କରାଉଥିଲେ ।

ସେମାନେ ସମସ୍ତେ ଜୀବଜନ୍ତୁଙ୍କ ନକ୍ସା ପସନ୍ଦ କରୁଥିଲେ । ତେଣୁ ସେହି ଦୋକାନର ସିଲ୍‌ମୋହର ଗଦାଗୁଡ଼ିକ ଶ୍ରେଷ୍ଠ ଏକ ଚିଡ଼ିଆଖାନା ପରି ଦେଖାଯାଉଥିଲା । ବିରାଟ କପାଳ ଥିବା କୁଞ୍ଜିଆ ହାତୀ, ଲମ୍ବ ଲମ୍ବ ଶିଂଗବାଲା ବଡ଼ ବଳଦ, ପଟାପଟା ଡୋରିବାଲା ବାଘ ଆଦି ଜନ୍ତୁଙ୍କ ନକ୍ସା ସେଠି ଥିଲା । ଏପରିକି ବର୍ଷାବହୁଳ ଗ୍ରୀଷ୍ମପ୍ରଧାନ ଦେଶର ଜନ୍ତୁଙ୍କ ନକ୍ସା ସେଠି ଥିଲା । ଙ୍କେକାଦୁଅନିବାସୀ ଏକଶିଂଗଆ ଗଣ୍ଡାର ଅଥବା ନଦୀଜଳର ବାସିନ୍ଦା ବିରାଟ କୁମ୍ଭୀରର ନକ୍ସା ମଧ୍ୟ ଥିଲା ।

ଅକାମୀ ପଥରଗଦାରୁ ହିରପ ଗୋଟିଏ ଖଣ୍ଡପଥର ଉଠାଇ ସେଥିରେ ଖୋଦେଇ କରିବାକୁ ଗୋଟିଏ ଖୋଜିଲା । ଗୁଡ଼ିଏ ମାଟିପାତ୍ର ବା ହାଣ୍ଡି କାନ୍ଥ ପାଖେ ଧାଡ଼ିହୋଇ ଥୁଆ ହୋଇ-ଥାଏ । ସେଥିରେ ବହୁତ ପ୍ରକାର ଚିଜ ଭର୍ତ୍ତି । ଗୋଟିଏ କଣରେ ତମ୍ବାତିଆରି ଚକଚକିଆ ଗୁଡ଼ିଏ ଖୋଦେଇ ଅସ୍ତ୍ର । ସେ କାଳର ଛୁରି, ଶୂର ବା ଅନ୍ୟସବୁ ହତିଆର ମଧ୍ୟ ତମ୍ବାରେ ତିଆରି । କାରଣ ପାଞ୍ଚ ହଜାର ବର୍ଷ ତଳର ଏଇ ଲୋକେ ଲୁହାର ବ୍ୟବହାର ଜାଣି ନ ଥିଲେ ।

ହିରପ ତା'ର ଖୋଦେଇକାମ ଆରମ୍ଭ କରିବାକୁ ଗଲାବେଳେ ତା'ର ସାନଭଉଣୀ ଆରମ୍ଭ କଲା କାନ୍ଦଣା । ତା'ର ଖେଳନା ଚଢ଼େଇଟି ତାଙ୍କ ଚାଧୂଆଘର ନଳାରେ ପଡ଼ିଯାଇଛି ।



ହରିପ ତାକୁ କହିଲା—"ରୁ କାନ୍ଦନା, ମୁଁ ତୋତେ ଅତି ଶୀଘ୍ର ଆଉ ଗୋଟିଏ ଚଢ଼େଇ ଆଣିଦେବି । କୁମ୍ଭାରପୁଅ ଜବ୍ବାର ମୋର ସାଙ୍ଗ । ମୁଁ ଏବେ ତାଙ୍କ ଘରକୁ ଯାଉଛି । ମୋ ସାଙ୍ଗରେ ଆ, ତା ବାପାଙ୍କ ତିଆରି ଖେଳନାସବୁ ଆମେ ଦେଖିବା ।"

ସନ୍ଦୀପନ ତା' ଭାଇର ହାତ ଧରିଲା । ତହୁଁ ସେମାନେ ରାସ୍ତା ଧରି ଚାଲିଲେ । ସରୁଆ ହେଲେ ବି ରାସ୍ତାଟା ଖୁବ୍ ସଫାସୁତୁରା ଓ ସିଧାସଳଖ । ନଦୀପଠ, ବଡ଼ଦାଣ୍ଡ ଓ ସାନ ଗଳି-ବାଟେ ଫୁଲ୍‌ଫୁଲିଆ ପବନ ବୋହୁଥାଏ । ଗଳିଗୁଡ଼ିକ ବଡ଼ଦାଣ୍ଡରୁ ସିଧାସଳଖ ବାହାରିଛି ।

ପିଲାଦିଓଟି ଆଉ ଏକ ଗଳିବାଟେ ଚାଲିଲେ । ଏଇଟି ହେଲା କୁମ୍ଭାରଗଳି । ସହରର ସବୁ କୁମ୍ଭାର ଏହିଠାରେ ରହି କାମ କରନ୍ତି । ସେମାନେ ବି ଭଲରେ ଚଳିବା ଲୋକ । ସେକାଳରେ ସବୁ ଦରବକୁ ପ୍ରାୟ ମାଟିପାତ୍ରରେ ରଖୁଥିଲେ । ତେଣୁ ମାଟିର ହାଣ୍ଡି ଓ ଘୁମ ଆଦିର ଚାହିଦା ବହୁତ ଥିଲା ।

ଠିକ୍ ସେତିକିବେଳେ ଜବ୍ବାର ତା' ବାପାଙ୍କ କାରଖାନାରୁ ବାହାରି ଆସିଲା । ତାକୁ ଦେଖି ସନ୍ଦୀପନ ପାଟିକରି କହିଲା—"ଦେଖ୍ ଦେଖ୍, ମୋର ଚଢ଼େଇ—ହେଇ, ତା' ପାଟିରେ ମୋ ଖେଳନାଟି ଧରିଛି ।" ସେ ଠିକ୍ ଏ କଥା କହୁଥିଲାବେଳେ ଶୁଭିଲା ଗୋଟାଏ ଜୋର୍ ସିଟିମାରି ଶବ୍ଦ । ହରିପ ଓ ସନ୍ଦୀପନ ଦୌଡ଼ିଯିବାରୁ ଜବ୍ବାର ତାଙ୍କୁ ତାର ନୂଆଧରଣର ସିଟିଟି ଦେଖାଇଲା । ଅନ୍ୟ ସିଟି ପରି ସେଇଟି ମଧ୍ୟ ପୋଡ଼ା ମାଟିର ନଳରେ ତିଆରି ହୋଇଥିଲା ଓ ସେଇଟି ଗୋଟିଏ ଚଢ଼େଇ ଆକାରର ।

ଦୁଆର ପାଖରେ ଗୋଟିଏ ସ୍ୱର ଶୁଭିଲା । ଏ ସ୍ୱର ହେଲା ଜେବରର । ବହୁତ ଦୂର-ଦେଶରେ ବେପାର ବଣିଜ କରୁଥିବା ଜଣେ ଧନୀ ବେପାରୀର ପୁତୁରା ସେ । "ମୋ ଦାଦା, ବଣିଆ ପାଖରୁ ଯେଉଁ ବଢ଼ିଆ ହାରସବୁ ଆଣିଛନ୍ତି ତାହା ଯାଇ ଦେଖିଆସ" ବୋଲି ସେ ଫୁଟାଣି କରି କହିଲା । "ଏଗୁଡ଼ିକ ସେ ଆଉ ଗୋଟିଏ ନଦୀ-ଉପତ୍ୟକାର ଦେଶକୁ ନେଇ ଯାଆନ୍ତି—ମିଶର ଦେଶ । ସେଠା ଲୋକେ ମରୁଭୂମି ଭିତରେ ବଡ଼ ବଡ଼ ପଥରରେ ସ୍ମୃତିସ୍ତମ୍ଭ ସବୁ ତିଆରିଛନ୍ତି ! ସେଠାର ସ୍ତ୍ରୀଲୋକମାନେ ଆମ ହାରକୁ ଖୁବ୍ ଭଲପାଆନ୍ତି । ଏପରିକି ସେଠାର ରାଜା ବା ଫାରୋଙ୍କ ପାଟରାଣୀ ବି ଏହି ହାର ପିନ୍ଧନ୍ତି । ଏଗୁଡ଼ିକ ଅସଲି ହାର । ହରିପ ଓ ଜବ୍ବାର ରାଗି କହିଲେ, "କାଠ ଓ ପଥର ତିଆରି ମାଳିଗୁଡ଼ିକ ମଧ୍ୟ ଠିକ୍ ସୁନାଅଳି ପରି ସୁନ୍ଦର ।"

|

କଡ଼ ପାଟିର କଥାବାର୍ତ୍ତା ଶୁଣି ଜବ୍ବାରର ମା ସଦାକୁ ବାହାରିଆସିଲେ । ତାଙ୍କ ସହିତରେ ଥିଲା ଗୋଟିଏ ସାଧାରଣ ମାଟି ଅଙ୍ଗନଧୂ । ତାଙ୍କ ହାତରେ ଓ ବାହୁରେ ପିନ୍ଧିଥିଲେ ଚମ୍ପାତିଆରି କଳା । ତାଙ୍କ ମୁଣ୍ଡର ବେଣୀକୁ ବାନ୍ଧି ରଖିବାକୁ ସେ ସୁନ୍ଦର ମୁଣ୍ଡକଣ୍ଠା ଓ

ପାଜଣା ମଧ୍ୟ ଲଗାଇଥାନ୍ତି । ଅଣ୍ଟାର କମରବନ୍ଧଟିକୁ ଧରିରଖିବା ଲାଗି ସେ ପିନ୍ଧଥାନ୍ତି ଗୋଟିଏ ପଦକ ଆକାରର କଣ୍ଟା । ଆଉ ତାଙ୍କ ଗଳାରେ ଲମ୍ବିଥାଏ ଗୋଲିଆ ଓ ଡିମ୍ବମନ୍ତ ଆକାରର ଖୋଦେଇ ପଥର ମାଳର ହାର ।

"ଆମ କାରିଗରମାନେ କ'ଣ ବୁଦ୍ଧିଆ ନୁହନ୍ତି ?" ସେ ଧୀରେ ପଚାରିଲେ । "ଅନ୍ୟ ଦେଶର ଧନୀ ଲୋକଙ୍କ ପାଖେ ବିକିବା ଲାଗି ସେମାନେ ସୁନା ଓ ହୀରା ମାଳ ଆଦି ନେଇ ଗଢ଼ନ୍ତି ଦାମିକା ହାର । ପୁଣି ଆମ ପରି ସାଧାରଣ ଲୋକଙ୍କ ଲାଗି କାଠ ଓ ପଥର କୁନ୍ଦ ମାଳ ଗଢ଼ି ଯେଉଁ ହାର ତିଆରନ୍ତି, ତାହା ମଧ୍ୟ ଦେଖିବାକୁ ଭାରି ବଢ଼ିଆ ।"



କେବର ପୁଣି କହିଲା, "ମୋ କକା ଲୁଗା ମଧ୍ୟ ବିକ୍ରି କରନ୍ତି । ସମୁଦ୍ର ପଥରେ ଯାଇ ଆମ ଜାହାଜଗୁଡ଼ିକ ପ୍ରାନ୍ତ ବନ୍ଦରରେ ଲାଗିବା ମାତ୍ରେ, ସେଠାର ବେପାରୀମାନେ ଅତି ଆଗ୍ରହରେ ଆସି ରୁଣ୍ଡ ହୁଅନ୍ତି । ସେମାନେ ବିଶେଷ ଆଗ୍ରହୀ ଆମ ଗହଣା ଓ ନରମ ସୂତାଲୁଗା କିଣିବାପାଇଁ । ସେ ଦେଶର ଯେତେ ବଡ଼ ବଡ଼ ଲୋକ, ସମସ୍ତେ ଆମର ସୂକ୍ଷ୍ମ ସୂତାର ଲୁଗା ପିନ୍ଧନ୍ତି । ସେମାନେ କେବଳ ବଞ୍ଚିଥିବା ବେଳେ ଯେ ଏ ଲୁଗା ପିନ୍ଧନ୍ତି, ତାହା ନୁହେଁ; ମଲା ପରେ ମଧ୍ୟ ତାଙ୍କ ଦେଶରେ ଶବକୁ ଏହି ଲୁଗାହିଁ ପିନ୍ଧାଇଦିଆଯାଏ ।"

ଜଷ୍ଟାର କହିଲା, "ଯା ଯା, ତୁ ଖାଲି ଗାଲୁଗଥାଗୁଡ଼ାଏ ଗପୁଛୁ ।" ହିରାପ ଆଗଭର ହୋଇ କହିଲା, "ସେ ଯାହା କହୁଛି ସତ । ସେ ଦେଶର ଲୋକେ କେତେକ ବିଚିତ୍ର ରୀତି ମାନନ୍ତି । ମୋ କକା ମୋତେ କହୁଥିଲେ, ସେଠାରେ ବଡ଼ଲୋକ ମରିଗଲେ ସେମାନେ ତାଙ୍କ ଦେହଟାକୁ ଏପରିଭାବେ ସାଇତି ଦିଅନ୍ତି ଯେ, ତାହା ନଷ୍ଟ ହୁଏନାହିଁ । ମୃତ ଦେହଟିକୁ ସେମାନେ ନରମ ଲୁଗାଦ୍ୱାରା ଗୁଡ଼ାଇ ଗୋଟିଏ ବିରାଟ କବର ମଧ୍ୟରେ ରଖନ୍ତି । ଏ କବର ତିଆରି ହୁଏ ବାଲି ଅଥବା ପଥରଦ୍ୱାରା ।"

ଏତିକବେଳେ ସନ୍ଦୀପନ ପାଟିକରି କହିଲା, "ଗୋଟିଏ ସୁନାହାର ଦେଖିବାକୁ ମୋର ମନ ହେଉଛି ।"

"ସାଙ୍ଗେ ସାଙ୍ଗେ ସୁନାହାର ଦେଖାଇ ହେବ ନାହିଁ" କେବର କହିଲା—"ଏହା ଖାଲି ବଣିଆ ଦୋକାନରେ ମିଳେ । ଧନୀମାନେହିଁ ସୁନାହାର କାରବାର କରିପାରନ୍ତି ।"

"ମୋର ନାନା ସୁନାହାର ବିକ୍ରି କରନ୍ତି ସିନା, ହେଲେ ଏବେ ତାଙ୍କ ପାଖେ ସୁନାହାର ନାହିଁ ।"

ଜଷ୍ଟାର ପଚାରିଲା—"ସୁନା କେଉଁଠୁ ଆସେ ? ଆମର ଏଠି ଆଖପାଖରେ ତ ସୁନା ମିଳେନା ।"

ତା'ର ମା କହିଲେ, "ଡଙ୍ଗା ତିଆରି କାରଖାନା ପାଖକୁ ଯାଇ କପର୍ଦ୍ଦିକୁ ପଚାର । ତା'ର ଡଙ୍ଗାଟି ଏବେ ଫେରିଛି । ସେ ତୁମକୁ କହିଦେବ, କେଉଁ ଚିଜ କେଉଁଠୁ ଆସେ, କେଉଁଠାକୁ ଯାଏ ।"

ହିରାପ କହିଲା—"ମୁଁ ସନ୍ଦୀପନକୁ ଆମ ଘରକୁ ନେଇଯାଏ ।"

ଜଷ୍ଟାରର ମା କହିଲେ, "ତାକୁ ମୋ ପାଖେ ଛାଡ଼ି ଦେଇ ଯାଅ । ଜଷ୍ଟାରର ବାପା ଯେଉଁ ସବୁ ନୂଆ ଖେଳନା ଏବେ ତିଆରିଛନ୍ତି, ସେ ତହିଁରୁ କେତେଟା ନେଇ ଖେଳିବ । ତା'ପରେ ମୁଁ ତାକୁ ତୁମ ଘରକୁ ନେଇଯିବି । ସେଇ ପିଞ୍ଜରା ଓ ତା' ଭିତରର ଚଢେଇଟିକୁ ସେ ନିଶ୍ଚେ ପସନ୍ଦ କରିବ । ସୂତାଟିକୁ ଟାଣିଲେ ଗଧଟି ମୁଣ୍ଡ ଟୁଙ୍ଗାଉଥିବା ଖେଳନାଟି ମଧ୍ୟ ତା ମନକୁ ପାଇବ ।"

"ହଁ, ହଁ, ମୋତେ ଦିଅ ମୋତେ ଦିଅ"—ତାଆଁ ମାଉ ମାଉ ଚନ୍ଦୀପନ କରୁଥାଏ । ହରିପ ଅତି ଖୁସିରେ ଏଥିକି ରାଜି ହୋଇଗଲା । କହିଲା, "ତାକୁ ଖାଲି ଗଳାମୁଣ୍ଡିଯାଏ ନେଇଗଲେ ସେ ଏକା ଏକା ଘରକୁ ଚାଲିଯିବ ଯେ ।" ମହିଳାଟି ପ୍ରତିଶ୍ରୁତି ଦେଇ କହିଲେ, "ମୁଁ ସେଯାଏ ଯାଇ, ଠିଆହୋଇ ରହି ଦେଖୁଥିବି ସେ ଘରେ ପହଞ୍ଚିବାଯାକେ । ଆମ ବାଟଗୁଡ଼ାକ ଏମିତିକା ସିଧାସଳଖ ଯେ ଏ ମୁଣ୍ଡରୁ ଅନାଇଲେ ସେ ମୁଣ୍ଡଯାକେ ଦିଶେ ।"

ଏହା ପରେ ପୁଅ ପିଲାଏ ବୁଲି ଚାଲିଗଲେ । ସେମାନେ ତନ୍ତୀସାହିବାଟେ ଯିବାବେଳେ ତନ୍ତୀପୁଅକୁ ଡାକପକାଇଲେ । ଗୋଟିଏ ବଡ଼ ଚାଳିଆ ସେଇ ସାହି ଭିତରେ ଥିଲା । ସେଇଟି ତନ୍ତରେ ଭରତି । ତନ୍ତୀପୁଅ ସେଠି ବସି ତା' ବାପାର ଲୁଗାବୁଣା କାମ ଦେଖୁଥିଲା । ଡାକ ଶୁଣି ଦୌଡ଼ିଯାଇ ସେ ତାଙ୍କ ସାଙ୍ଗରେ ମିଳିଗଲା ।

ସହର ସୀମାରୁ ପିଲାଏ ଦେଖିଲେ ଗହମ ଓ ଯବର କ୍ଷେତ । ଏ କ୍ଷେତକୁ ଗାଁବାଲା ଚାଷ କରନ୍ତି । ଏଇ ଗାଁ ଲୋକେ ରହନ୍ତି ମାଟି କୁଡ଼ିଆରେ । ସେଇ ବାଟରେ ସେମାନେ ଇଟାଭାଟି ମଧ୍ୟ ଦେଖିଲେ । ଏଇ ସବୁ ଖୋଲା ଭାଟିରେ ଇଟା ପୋଡ଼ା ହେଉଥିଲା । ତାଙ୍କ ବାଟ କଡ଼ର ଗୋଟିଏ ସଡ଼କରୁ ମୋଟା ପିଲାଟିଏ ତାଙ୍କୁ ଦେଖି ଡାକ ପକାଇଲା । ଏ ପିଲାଟିର ନାମ ବୃହଦ୍ରଥ । ସେ ପୁରୋହିତଙ୍କ ପୁଅ । ସେ ସଦାବେଳେ ତାଙ୍କ ଖେଳର ସାଥୀ ହୋଇପାରୁ ନଥିଲା । ଦିନ ଭିତରେ ତାକୁ ବାରମ୍ବାର ଗାଧୋଇବାକୁ ପଡ଼ୁଥିଲା ଓ ନାନା ମନ୍ତ୍ର, ଜଣାଣ ଆଦି ଘୋଷିବାକୁ ପଡ଼ୁଥିଲା । ଏ ସବୁ କାମ ଛାଡ଼ିଦେଲେ ମଧ୍ୟ ତା'ର ବାପାଙ୍କ ବଦଳରେ ସେ ଅନ୍ୟ କାମ ବି କରୁଥିଲା । ତାଙ୍କ ବଦଳରେ ସେ କେତେ ଲୋକଙ୍କ ଘରକୁ ଯାଇ ଆଗାମୀ ପର୍ବପର୍ବାଣୀ କଥା ଜଣାଉଥିଲା । ସେ ଧାଇଁ ଧାଇଁ ଆସି କହିଲା, "କିରେ, କୁଆଡ଼କୁ ଯାଉଛ, ମୁଁ ତୁମ ସାଙ୍ଗରେ ଯିବି । କିନ୍ତୁ ଏଡ଼େ ବେଗେ ବେଗେ ଚାଲନାହିଁ । ଖାଇସାରି ଏତେ ଜୋର୍‌ରେ ଚାଲିବା ଭଲ ନୁହେଁ ।"



ଆଉ ପିଲାଗୁଡ଼ିକ ତାକୁ ଚିଡ଼ାଇବାକୁ କହିଲେ, "ଜରେ, ତୁ କଣ ପୁଣି ଖାଇଥିଲୁ ?"

ବୃହଦ୍ରଥ ସ୍ୱରରେ ଉତ୍ତର ଦେଲା, "ହଁ ହଁ, ମୁଁ ଖାଇଥିଲି ତ ! ଖାଇବା ପୂର୍ବରୁ ମୋତେ ପରା ଗାଧୋଇ ପାଦଧୋଇ ମନ୍ତ୍ର ବୋଲିବାକୁ ପଡ଼େ; ସେଇଥିପାଇଁ ମୋ'ର ମଧ୍ୟାହ୍ନ ଭୋଜନ ସରେ ତୁମ ଭୋଜନର ବହୁତ ପରେ ।"

ଜନ୍ତାର କହିଲା, "ତୁ ପାହାଡ଼ ପ୍ରମାଣ ଖାଦ୍ୟ ଗିଳିଲୁଣି ?"

ବୃହଦ୍ରଥ ଓଠ ଚାଟି କହିଲା, "ଖଜୁରିକୋଳି ଆସ୍ୱର ମଢ଼ାଉ ମୁଁ ବାରଖଣ୍ଡ ପଥ ଲୁଟି ଖାଇଛି ।" ତହୁଁ ସେ ହରପ ଆଡ଼କୁ ଚାହିଁ କହିଲା, "ତୁମ କକା ଯୋଡ଼ାନଦୀ ଇଉଫ୍ରେଟିସ୍ ଓ ଟାଇଗ୍ରୀସ୍ ଦେଶର ଯେଉଁ ଖଜୁରିକୋଳି ଆଣନ୍ତି, ସେଇ ହେଲା ସବୁଠାରୁ ବଢ଼ିଆ ।" ଟିକଏ ଦମ୍ ମାରି ବଡ଼ ଆଗ୍ରହରେ ପଚାରିଲା—"ତୋ କକା ନିକଟରେ ଫେରି ଆସିବେ ପରା ?"

ହସି ହସି ହରପ କହିଲା, "ହଁ, ହଁ । ସେ ଯେଉଁ ଖଜୁରିକୋଳି ଆଣିବେ, ସେଥିରୁ ଥୋଡ଼ାଏ ତତେ ମୁଁ ନିଶ୍ଚୟ ଦେବି ଯେ । ବର୍ଷା ଋତୁ ଆସିବା ପୂର୍ବରୁ ସବୁ ଡଙ୍ଗା ଫେରିଆସିବ । ତେଣୁ ସେ ଫେରିବାର ଦିନ ଅତି ନିକଟ ହେଲାଣି ।"

ପିଲାଗୁଡ଼ିକ ଯାଇ ପହଞ୍ଚିଲେ ନଈକୂଳରେ ଡଙ୍ଗା ତିଆରି କାରଖାନା ଅଗଣାରେ । ସେଇ ସହରଟିରୁ ବହୁତ ବେପାର ବଣିଜ ହେଉଥିଲା । ତେଣୁ ସମୁଦ୍ରବାଟେ ଓ ରାସ୍ତାବାଟେ କାରବାର ସଦାବେଳେ ଚାଲୁରହିଥିଲା । ଖାଲି ବର୍ଷା ଋତୁଟିକୁ ଛାଡ଼ିଦେଇ ଆଉ ସବୁ ଋତୁରେ ଡଙ୍ଗା ଯା'ଆସ କରେ । ଡଙ୍ଗାଗୁଡ଼ିକ ଖୁବ୍ ବଡ଼ ବଡ଼ । ସମୁଦ୍ର ଢେଉଠାରୁ ବହୁ ଉପରେ ଲାଗି ରହୁଥିଲା ଏ ଡଙ୍ଗାର ମଞ୍ଚ । କେତେକ ଡଙ୍ଗାରେ ପାଲ୍ ଥାଏ । ନାବିକମାନେ ସୂର୍ଯ୍ୟଙ୍କୁ ଚାହିଁ ଦିନରେ ଡଙ୍ଗା ବୁହାନ୍ତି ଏବଂ ରାତିରେ ଡଙ୍ଗା ବୁହାନ୍ତି ଧ୍ରୁବତାରାକୁ ଦେଖି । ପ୍ରାୟ କୂଳେ କୂଳେ ଯାଆନ୍ତି । କାରଣ ସମୁଦ୍ରରେ ଅତି ଭିତରକୁ ପଶିଯାଇ ସେବେ ସ୍ଥଳଭାଗ ଆଉ ଦେଖି ନପାରିବେ, ତେବେ ତାଙ୍କ ଡଙ୍ଗା ବାଟବଣା ହୋଇଯିବାର ଭୟ ଥାଏ ।



ଜାହାଜଘର କାରଖାନା ଭିତରେ ପିଲାଏ ତାଙ୍କର ବନ୍ଧୁ କପର୍ଡଙ୍କୁ ଭେଟିଲେ । ସେ ଜଣେ ଜାହାଜ ମାଲିକ ହେଲେ ସୁଦ୍ଧା ଭଲ-ହୃଦୟର ଲୋକ, ବହୁତ ବୁଲାବୁଲି କରିଥିବାରୁ ଜ୍ଞାନୀ ମଧ୍ୟ ହୋଇଥିଲେ । ସୁନ୍ଦର ସୁନ୍ଦର ଦରବ ସବୁ କେଉଁ ଦୂରଦୂରାନ୍ତରୁ ଆସେ ସେ ସବୁ କାହାଣୀ ସେ ପିଲାଙ୍କୁ କହିଲେ ।

ସେ କହିଲେ ଯେ ଦକ୍ଷିଣ-ପୂର୍ବ ଦେଶରୁ (ବର୍ତ୍ତମାନର ମହୀଶୂର ରାଜ୍ୟ) ସୁନା ଆସେ । ଆଉ ଦକ୍ଷିଣରୁ ଆସେ ଗୋଟିଏ ସୁନ୍ଦର ସାଗୁଆ ରଙ୍ଗର ପଥର । ଗୋଟିଏ ଅତି ଉଜ୍ଜ୍ୱଳ ନୀଳ ରଙ୍ଗର ପଥର ଆଣିବା ଲାଗି ଓଟସବାର ବେପାରୀଦଳ ଉତ୍ତର ଦିଗକୁ ଜନପଦଶୂନ୍ୟ ବାଟରେ ବହୁତ ଦୂର ଯାଆନ୍ତି । ସେ ଦେଶଟି ଅଫଗାନିସ୍ତାନ । ଏଇ ପାହାଡ଼ ପର୍ବତମାନଙ୍କରେ ବଡ଼ ବଡ଼ ବାଘ ଓ ଅନ୍ୟ ହିଂସ୍ରଜନ୍ତୁ ଥାଆନ୍ତି ।

ସେ ତାଙ୍କ ନିଜ ଜାହାଜରେ ଦୂର ଦେଶକୁ ଯାତ୍ରା କରୁଥିଲେ । ସେ ବୋଇତ ନେଇ ଯାଉଥିଲେ ଇଉଫ୍ରେଟିସ୍ ଓ ଟାଇଗ୍ରିସ୍ ନଦୀର ଉପତ୍ୟକାରେ ଇଟା ତିଆରି କୋଠାପୂର୍ଣ୍ଣ ସହରକୁ । ସେଠାରୁ ଭଲ ଖଜୁରିକୋଳି ଆସେ । ଆହୁରି ଦୂରକୁ ଗଲେ ଦେଖାଯାଏ ଭୂତସ୍ତ ଏକ ନଦୀ-ଉପତ୍ୟକାର ସଭ୍ୟତା (ଇଜିପ୍ଟ)—ଯେଉଁଠି ଖାଲି ପଥର ତିଆରି କୋଠାବାଡ଼ି ରହିଛି । ତାହା ମିଶର ଦେଶ । ନୀଳ ନଦୀ କୂଳରେ ରହିଛି ସେ ଦେଶର ସହର ଓ ଗ୍ରାମ-ଗୁଡ଼ିକ । କିନ୍ତୁ ପଥର ତିଆରି ଯେଉଁ ବିରାଟ କବରଗୁଡ଼ିକ ଲାଗି ଏହି ନଦୀଉପତ୍ୟକାଟି ବିଶ୍ୱବିଖ୍ୟାତ, ସେଗୁଡ଼ିକ ରହିଛି ନଦୀଠାରୁ ଦୂରରେ ମରୁଭୂମି ମଧ୍ୟରେ ।



ଜେବର ବଡ଼ ବ୍ୟଗ୍ର ହୋଇ ପଚାରିଲା, "ସେଇସବୁ ନଗରଗୁଡ଼ିକ କ'ଣ ଆମର ଏ ନଗରୀ ଅପେକ୍ଷା ଅଧିକ ସୁନ୍ଦର ?"

କପର୍ଦ୍ଦି ହସିଲେ । ସେ କହିଲେ, "ତାଙ୍କର କେତେ କିସମର ଚଳ ଅଛି; ହେମିତ ଆମର ବି ଗୁଡ଼ାଏ ଭଲ ଜିନିଷ ଅଛି ଯାହା ତାଙ୍କର ନାହିଁ । ହେଲେ ମୁଁ ତୁମକୁ ଗୋଟିଏ କଥା କହିବି । ପ୍ରତ୍ୟେକ ଥର ବୋଇତ ଯାତ୍ରା ସାରି ଫେରିବା ମାତ୍ରେ ମୁଁ ଆମ ସାଧାରଣ ଗାଧୁଆଘରକୁ ଯାଇ ଉଷୁମ ପାଣିରେ ମନଇଚ୍ଛା ଗାଧାଏ । ଏଇ ସୁବିଧାଟି ମୁଁ ଅଉ କେଉଁଠାରେ ପାଏ ନାହିଁ ।"

ଜେତ୍ତାର ପଚାରିଲେ, "ଅନ୍ୟ ଦେଶରେ ଲୋକେ କଣ ଗାଧାନ୍ତି ନାହିଁ ?"

"ତାଙ୍କର ପ୍ରତ୍ୟେକ ଘରେ ଅଲଗା ଗାଧୁଆଘର ନାହିଁ ଏବଂ ତାଙ୍କର ଏପରି ସୁନ୍ଦର ସାଧାରଣ ଗାଧୁଆଘର ଆଦୌ ନାହିଁ"— ଗର୍ବିତ କଣ୍ଠରେ ହରପ କହିଲା ।

କପର୍ଦ୍ଦି ଆଙ୍ଗୁଠି ବୁଲାଇ କହିଲେ, "ସେମାନଙ୍କ ଦେଶରେ ମାଟି ତଳେ ଯୋଡ଼ାହୋଇ ଥିବା ପାଣିନଳ କି ପୋଡ଼ା ଇଟାର ଜଳ-ନିଷ୍କାସନ ନାଳୀ ନାହିଁ । ତାହା ଫଳରେ ନଗରଗୁଡ଼ିକୁ ସେମାନେ ସଫାସୁତୁରା ରଖି ପାରନ୍ତି ନାହିଁ । ଜୋଡ଼ା ନଦୀର ଉପତ୍ୟକାରେ ଥିବା ନଗରମାନଙ୍କରେ ସେମାନେ ଇଟାରେ ଉଚ୍ଚ ଉଚ୍ଚ ସ୍ତମ୍ଭ ତିଆରି କରି ତା'ଉପରକୁ ଯାଇ ନକ୍ଷତ୍ରମାନଙ୍କୁ ଲକ୍ଷ୍ୟ କରନ୍ତି । ନୀଳ ନଦୀର ଦେଶରେ (ଇଜିପ୍ଟ ବା ମିଶର) ଅତି ବିରାଟ ମୂର୍ତ୍ତି ସ୍ତମ୍ଭଗୁଡ଼ିକ ମରୁଭୂମି ବାଲି ମଝିରେ ବହୁତ ଉଚ୍ଚକୁ ଉଠିଯାଇଛି । ଦେଖିଲେ ମନେହେବ ଯେ ତାହା ଚିରସ୍ଥାୟୀ । କିନ୍ତୁ ଆମ ନଗରମାନଙ୍କ ପରି ଏପରି ବଢ଼ିଆ ନକ୍ସାର ସହର ଆଉ ନାହିଁ ।

"ଆମ ନଗରଗୁଡ଼ିକ ହେଲା ପୃଥିବୀର ସବୁଠାରୁ ସଫାସୁତୁରା ।"

# ଭୀମକ ଓ ତା'ର ସାଙ୍ଗସାଥୀ

**ଏବେ ଆସ ସ୍ମରଣ ଯୁଗକୁ ।** ଏହି ଯୁଗର କଥାଗୁଡ଼ିକ ମହାଭାରତର ମହାକାବ୍ୟରେ **ବର୍ଣ୍ଣିତ** ହୋଇଛି । **ସେତେବେଳକୁ ଆର୍ଯ୍ୟ ବୋଲି ଗୋଟିଏ ବାରବୁଲା ଜାତି ଆସି** ଏ ଦେଶର ସିନ୍ଧୁ ଉପତ୍ୟକା**ରେ ପ୍ରଥମ ସଭ୍ୟତାର ପ୍ରତିଷ୍ଠାତା ମହେଞ୍ଜୋଦାରୋବାସୀଙ୍କୁ** ତଡ଼ିଦେଲେଣି । ମହେଞ୍ଜୋଦାରୋ **ନଗରବାସୀ ବା ବ୍ୟବସାୟୀମାନେ ଆଉ ନାହାନ୍ତି ।** ଆର୍ଯ୍ୟମାନେ ଗୋଟିଏ ପଶୁପାଳକ **ଜାତି ଥିଲେ । ତାଙ୍କର ବହୁତ ଗୋରୁ ଥିଲେ । ଏ ସବୁ** ଗୋରୁଙ୍କୁ ନେଇ ସେମାନେ ଘୂରିବୁଲୁ**ଥିଲେ । କିଛି କିଛି ଚାଷ ମଧ୍ୟ କରୁଥିଲେ ।**

ଯମୁନା ନଦୀ କୂଳରେ ଗୋ**ଟିଏ ଉର୍ବର ଅଞ୍ଚଳର ନାମ ଥିଲା ବାର୍ଣ୍ଣାବତ । ସେଠାରେ** ପିଇବା ପାଣି ବିଶେଷ ସୁବିଧା **ସାଙ୍ଗକୁ ଗ୍ରୀଷ୍ମାଶୀତଳ ବଣ ଓ ବହୁତ ଚରାଭୂଇଁ ଥିଲା ।** ବଣର ପାଖାପାଖି ଗୋଟିଏ ଗାଁ । **ତାର ଘରଗୁଡ଼ିକ ମାଟି ଓ ବାଉଁଶରେ ତିଆରି । ଧାଡ଼ି** ଧାଡ଼ି ଘରଗୁଡ଼ିକ କଣ୍ଟା**ବାଡ଼ଦ୍ୱାରା ସୁରକ୍ଷିତ । ରଥଚାଳକର ପୁଅ ଭୀମକ ସେହି ଗାଁରେ**



ରହୁଥିଲା । ତା'ର ମା ଓ ସାନଭଉଣୀ ଦେଖା ବି ତା' ସାଙ୍ଗରେ ଥିଲେ । କୁରୁକ୍ଷେତ୍ର ମହାଯୁଦ୍ଧରେ ତା'ର ବାପା ମରିଯାଇଥିଲେ ।

ଅନ୍ୟାନ୍ୟ ସମବୟସ୍କ ପରି ଶ୍ରମକ ମଧ୍ୟ ଶୀଘ୍ର ଉଠୁଥିଲା । ସେ ଧନୁର୍ବିଦ୍ୟା ଶିଖୁଥିଲା । ସାଙ୍ଗସାଥୀମାନଙ୍କ ଅପେକ୍ଷା ତା'ର ଲକ୍ଷ୍ୟ ଅଧିକ ଭଲ ବୋଲି ଲୋକେ କହନ୍ତି । ଆଉ କେତେକ ବର୍ଷ ମଧ୍ୟରେ ସେ ରଥ ଚଲାଇବା ଶିଖିବ । ଏପରିକି ରଥ ଗଢ଼ିବା ବିଦ୍ୟା ମଧ୍ୟ ସେ ଆୟତ୍ତ କରିବ । ତା'ର ପିତାଙ୍କ ପରି ରାଜାଙ୍କର ଶ୍ରେଷ୍ଠ ସାରଥୀଙ୍କ ମଧ୍ୟରେ ଜଣେ ହେବା ଲାଗି ତା'ର ଖୁବ୍ ମନ ।

ସୂର୍ଯ୍ୟଦେବ ମୁଣ୍ଡ ଉପରେ ହେଲାବେଳକୁ ସକାଳ ଓଳିର କାମ ସରିଯାଏ । ନଦୀରେ ଗାଧୋଇସାରି ଶ୍ରମକ ଘରକୁ ଫେରେ ଖାଇବା ଲାଗି । ତାପରେ ସେ ତାର ସାଙ୍ଗମାନଙ୍କ ସାଙ୍ଗରେ ମିଶି ଜଙ୍ଗଲ ଭିତରକୁ ବୁଲିଯାଏ ଖେଳିବା ଲାଗି । ତା'ର ସାଥୀ ଥିଲେ ଗାଈଆଳ ପିଲାଏ, କୁମ୍ଭାରପୁଅ, ତନ୍ତୀପୁଅ ଓ ବଣିଆପୁଅ । ସେମାନେ ବରାବର ଯୁଦ୍ଧଖେଳ ଖେଳନ୍ତି । ଶ୍ରମକର ବାପା ଯୁଦ୍ଧ କରି ମରିଥିବାରୁ ସେ ସବୁଦିନେ ଦଳର ନେତା ହୁଏ । ତା'ର ସୈନ୍ୟବାହିନୀକୁ ସେ ସମାନ ଗୁଣ୍ଡିକଣିଆ ଅଥବା ଚକ୍ରାକାରରେ ସଜାଉଥିଲା । ବେଳେ ବେଳେ ସେମାନେ ଦଉଡ଼ିର ଜଣାଣି, ବାଉଁଳଖଡ଼ା ଓ ଟାଙ୍ଗିଆ ଧରି ଶତ୍ରୁପକ୍ଷକୁ ଘେରାଉ ମଧ୍ୟ କରୁଥିଲେ ।

ଏଇ ଖେଳ ପାଇଁ ଶ୍ରମକ ତା'ର ନିଜର ହାତହତିଆର ତିଆରି କରିବାକୁ ଭଲ ପାଉଥିଲା । ଲମ୍ବ ଲମ୍ବ ବାଡ଼ିକୁ ମୁନିଆଁ କରି ଓ ସଜାସୁରୁଚ କରି ସେ ତିଆରୁଥିଲା ବର୍ଚ୍ଛମ । ଗ୍ରେଣ୍ଟିଆ ଓ ମୋଟା ବାଡ଼ିମୁଣ୍ଡରେ ଗୋଲିଆ ପଥର ବାନ୍ଧି ସେ କରୁଥିଲା ଟାଙ୍ଗିଆ । ଏହି ଯୁଦ୍ଧକୁଠାର ତା'ର ପ୍ରିୟ ଅସ୍ତ୍ର । ବାଡ଼ିମୁଣ୍ଡରେ ପଥର ବାନ୍ଧିବା କାମଟି ସେ ବଡ଼ ଯତ୍ନରେ କରେ । ଚମଡ଼ାରେ ବାନ୍ଧିଲେ ତାହା କ୍ରମେ ଶୁଖିଯାଇ ଖୁବ୍ ଭଲ କାମ ଦିଏ ।

ଏ ଯୁଦ୍ଧଖେଳଗୁଡ଼ିକ ବେଳେ ବେଳେ ଭୀଷଣ ଆକାର ଧରୁଥିଲା । ବାଙ୍ଗରା ବାଙ୍ଗରା, କଳା କଳା ଦସ୍ୟୁ ଜାତିର ପିଲା ଯଦି ସେଠାକୁ ଆସନ୍ତି, ତେବେ ବଡ଼ ଗୋଳମାଳ ହୁଏ । ଦୀର୍ଘକାୟ ଗୋରା ଗୋରା ଆର୍ଯ୍ୟଙ୍କଠାରୁ ଦସ୍ୟୁ ଜାତିର ଲୋକେ ଦୂରରେ ଅଲଗା ହୋଇ ରହୁଥିଲେ; କାରଣ ଆର୍ଯ୍ୟମାନେ ଥିଲେ ବିଜେତା ଜାତି । ଜଙ୍ଗଲର ଗହଳ ଅଞ୍ଚଳରେ ଦସ୍ୟୁଙ୍କର ସାନ ସାନ ବସତି ଥିଲା । ଏଇ ଦୁଇ ଦଳ ମଧ୍ୟରେ ବେଳେ ବେଳେ ଯୁଦ୍ଧ ହେଉଥିଲା ସତ, କିନ୍ତୁ ସେମାନେ ବି ସାଙ୍ଗହୋଇ ଖେଳୁଥିଲେ ।

ଶ୍ରମକ ତରତର ହୋଇ ଯଅଳଡ଼ି ଓ ଦୁଧଚକ ଗିଳି ଦଉଆଏ । ତା'ର ମା ତାକୁ ପଚାରିଲେ, "କିରେ, ତୋର ଆଜି ଏତେ ତରତର କାହିଁକି ?"

ଶ୍ରମକ ଉତ୍ତର ଦେଲା, "ଦେବଦତ୍ତ ଫେରିଆସିଛି । ତାହା ସହିତ ବହୁତ ଦିନୁଁ ଦେଖା ହୋଇନାହିଁ ।"



ମା ପଚାରିଲେ, "ଦେବଦତ୍ତ ପରା ଆଶ୍ରମକୁ ଯାଇଥିଲା ? ସେ ପରା ଗୁରୁ ଦେବମିତ୍ର ଶିଷ୍ୟଙ୍କର ଚେଲା ହୋଇଥିଲା ? ପ୍ରାୟ ସାତ ବର୍ଷ ହେଲା ତ ସେଇଆଡ଼େ ଥିଲା । ସେ ନିଶ୍ଚେ ଧନୁର୍ ଜ୍ଞାନ ହୋଇଯାଇଥିବ ।"

ସୁମନ ମନକଷ୍ଟରେ କହିଲା, "ସେ ଯେ ଆଶ୍ରମକୁ ଚାଲିଗଲା, ସେଇଟା ବଡ଼ ଦୁଃଖର କଥା । ସେ ଆମ ଦଳର ଶ୍ରେଷ୍ଠ ଲଢ଼ୁଆ ଥିଲା ।"

ଏ କଥା ଶୁଣି ମା ହସିପକାଇଲେ । "ହଉ ତୁ ବେଗେ ଖାଇଯା, କିନ୍ତୁ ଉଛୁର କରିବୁ ନାହିଁ ।" ତା ପରେ ସେ ଥାଳି ଧୋଇବାରେ ଲାଗିଲେ ।

ସୁମନର ସାନଭଉଣୀ ଦେବୀର କୌତୂହଳ ମେଣ୍ଟି ନଥାଏ । ସେ ପଚାରିଲା, "ଭାଇ, ଏତେଗୁଡ଼ାଏ ତୀର ଆଉ ବାଡ଼ି କାହିଁକି ନେଉଛ ?"

ସୁମନ କହିଲା, "ଆମର ଆଜି ଗୋଟାଏ ବଡ଼ ଯୁଦ୍ଧ ହେବ । ଏ ଯୁଦ୍ଧଟା ହେବ ସେଇ କୁରୁକ୍ଷେତ୍ର ଯୁଦ୍ଧ ପରି—ଯେଉଁଠି ମହାରାଜା ଯୁଧିଷ୍ଠିର ଓ ତାଙ୍କ ଭାଇମାନେ ତାଙ୍କର କୌରବ ଭାଇଙ୍କୁ ହରାଇ ଦେଇଥିଲେ । ଆମର ଗୋଟିଏ ବିରାଟ ହାତୀବାହିନୀ ରହିବ । [illegible] ଗାଈଙ୍କୁ ନେଇ ଆମେ କରିବୁ ହାତୀବାହିନୀ । ବସ୍ତି ପିଲାଏ ହେବେ କୌରବ ଦଳ । ମୁଁ ଆଜି ଦେଖାଇଦେବି କିମିତି ମୋର ରଥ ଓ ଅଶ୍ୱାରୋହୀବାହିନୀ ହାତୀବାହିନୀକୁ ବାଟି ଛତ୍ରଖାନ କରିଦେଇପାରେ ।"

ଦେବୀ ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ଆଚ୍ଛା, ଏ ଯୁଦ୍ଧଟା କେଉଁଠାରେ ହେବ ?"

"ଆମେ ଯାଇ ଠୁଳହେବୁଁ ବାରଣାବତଠାରେ । ଏହିଠାରେ କପଟୀ କୌରବମାନେ ତାଙ୍କ ରାଜବଂଶୀୟ ଭାଇଙ୍କ ଲାଗି ଗୋଟିଏ ନଅର ତୋଳାଇଥିଲେ । ଏ ନଅରର ଆଗ ପଟରେ ରଙ୍ଗିନ୍ ପଥର ଥିଲେ ସୁଦ୍ଧା ଭିତର ପଟଟା ଜଉ—ଯାହାକି ଅତି ସହଜରେ ଜଳିପାରେ । ପାଣ୍ଡବମାନଙ୍କ ମନରେ କେମିତି ହେଲେ ସନ୍ଦେହ ହେଲା । ଗାଢ଼ ଅନ୍ଧାର



ହେଲ ଷଣି ସେମାନେ ସେହି ନଅରରୁ ଖସି ପଳାଇଲେ । ସେଇ ସମୟରେ ହିଁ ଦୁର୍ବଳ ଦଶାଁ ଲାଗି ପୁରା ନଅରଟି ଜଳିଗଲା । ଏବେ ସେଠାରେ ଖାଲି ଭଗ୍ନାବଶେଷ ପଡ଼ିଛି, ସବୁଆଡ଼େ ଘାସ ଆଉ ବୁଦା । ଗୋଟିଏ ବଡ଼ ମୁକ୍ତକ୍ଷେତ୍ର ହେଲାପରି ଖୋଲା ଥାନ ସେଠି ଯଥେଷ୍ଟ । ଗଛ କୋରଡ଼ରେ ଥିବା ଆମ ଅସ୍ତ୍ରାଗାରରୁ ଅସ୍ତ୍ର ନେଇ ଆମେ ସେଇଠି ଯାଇ ପହଞ୍ଚିବୁଁ ।”

ଦେବୀ କହିଲା, “ମୁଁ ବି ଯିବ ।”

ବାମନ କହିଲା, “ସାନ ଝିଅ ପିଲାଏ ବଡ଼ ବଡ଼ ଯୁଦ୍ଧ ଜାଗାକୁ ଯାଆନ୍ତି ନାହିଁ ।” ତା' ପରେ ସେ ଦୌଡ଼ି ପଳାଇଲା ।

ଦେବୀ ଟିକିଏ କାନ୍ଦିଲା, ପୁଣି ଆଖି ପୋଛି ନିଜର ହାଣ୍ଡିଟି ନେଇ ନଦୀକୁ ଗଲା ପାଣି ଆଣିବାକୁ । ନଦୀକୂଳରେ ଠିଆହୋଇ ଗୋଟାଏ ଡେଙ୍ଗା ଧଳା ବଗକୁ ଦେଖୁ ଦେଖୁ ଦିନ ଗଡ଼ିଗଲା । ସେ ବହୁତ ଡେରିରେ ଘରକୁ ଫେରିଲା ।

ତାକୁ ଦେଖି ତା ମା' ରାଗିଗଲେ, “ତୁ ଏତେ ବେଳକେ ଅଇଲୁ ? ତୋ ପିଇସୀଙ୍କ ଦେହ ଭାରି ଅସୁଖ, ମୁଁ ତାଙ୍କୁ ଦେଖିବାକୁ ଯିବ । ପଡ଼ୋଶୀଘର ହାରତି ସାଙ୍ଗରେ ତୁ ଖେଳୁଥା । ମୁଁ ଫେରିଲେ ତୋତେ ଡାକିବ ।”

କିଛି ନ କହି ଦେବୀ ରାଜି ହେଲା, କିନ୍ତୁ ମନେ ମନେ ଭାବିଲା, ‘ମୁଁ ପଡ଼ୋଶୀ ଘରକୁ ଯିବ ନାହିଁ, ସେଇ ବାହୁଣାବଟକୁ ଯିବ ।’

ତେଣୁ ଦେବୀ ଚାଲିଲା ଜଙ୍ଗଲ ବାଟେ । ଆର୍ଯ୍ୟ ଜାତିଙ୍କ ପିଲାଏ ଜଙ୍ଗଲି ଜନ୍ତୁଙ୍କୁ ଡରୁ ନ ଥିଲେ । ତା' ଭାଇ ବାମନ ସେଠି ପହଞ୍ଚିଲା ପୂର୍ବରୁ ସେ ପହଞ୍ଚିଗଲା । ବାମନର ଡେରିର କାରଣ ହେଲା, ସେ ତା'ର ଅସ୍ତ୍ର ଆଣିବାକୁ ଆଗ ଯାଇଥିଲା ବରଗଛ କୋରଡ଼ ପାଖକୁ । ସେଇଟା ହେଲା ତାର ଅସ୍ତ୍ରାଗାର ।

ଏଥିମଧ୍ୟରେ ବାମନ ତା' ସାଥୀଙ୍କ ସାଙ୍ଗରେ ଜୁଟି-ଯାଇଥାଏ । ଏମାନେ ହେଲେ ଚନ୍ଦ୍ରୀସ୍ୱଅ କଳାଧନ,

କୁମ୍ଭାରପୁଅ ଅଳୀକ ଏବଂ ଗୋଟିଏ ବଣିଆଘର ପିଲା ଜୟନ୍ତ । ଗାଈଆଳ ପିଲା ଧେନୁକର ଆସିବା କଥା ଟିକିଏ ଡେରିରେ । ସେ ପରେ ଗାଈ ଅଡ଼ାଇ ଆଣିବାର କଥା । ଗାଈ ନେଇ ସେ ଯାଇ ପହଞ୍ଚିବ ଭଙ୍ଗା ରାଜପ୍ରାସାଦ ପଡ଼ିଆରେ ।

ଏହା ପରେ ଦେବଦତ୍ତ ଆସି ପହଞ୍ଚିଲା । ତାକୁ ଦେଖିଲାକ୍ଷଣି ସମସ୍ତେ ଆନନ୍ଦରେ ପାଟିକଲେ । ସ୍ୱରଆଡ଼ୁ ବହୁତ ପ୍ରଶ୍ନ ବର୍ଷିଲା ତା' ଉପରେ ।

ଜଣେ ପଚାରିଲା—"ତୁ କ'ଣ ପଢ଼ୁ କରେ ?" ଆଉ ଜଣେ କହିଲା—"ତୁ କଣ ସବୁ ଶାସ୍ତ୍ର ହଜମ କରିସାରିଲୁଣି ? ତୋର ସାଙ୍ଗ କଏ କରେ ?" "ତୋର ପୁରୁଣା ସାଙ୍ଗଙ୍କୁ ଭୁଲି ଯାଇନୁ ତ ?" ଏହିପରି କେତେ ଯେ ପ୍ରଶ୍ନ !

ଦେବଦତ୍ତ ସମସ୍ତଙ୍କ ସାଙ୍ଗରେ ବହୁତ ମିଶେ; କିନ୍ତୁ ଆଗଠାରୁ ସେ ଅଧିକ ଚିନ୍ତାଶୀଳ ଓ ଗମ୍ଭୀର ହୋଇଗଲଣି । ସେ ଧୀରେ ଧୀରେ କହିଲା, "ବର୍ତ୍ତମାନ ମୁଁ ସ୍ୱର ବେଦ ପଢ଼ୁଛି । ସବୁ ଶାସ୍ତ୍ର ଶେଷ କରି ସେଥିରେ ପଣ୍ଡିତ ହେବାକୁ ହେଲେ, ମୋତେ ଗୁରୁଙ୍କ ପାଖରେ ଆହୁରି ଆଠବର୍ଷ ପଢ଼ିବାକୁ ହେବ । ପାଠ ମଧ୍ୟ ବହୁତ ।"

ଅଳୀକ କହିଲା, "ଓଃ, ତୁ ସତରେ କେଡ଼େ ବୁଦ୍ଧିଆ ! ମୋର ହଦା ମୁଣ୍ଡରେ ଏତେ ପାଠ କେବେହେଲେ ପଶନ୍ତା ନାହିଁ ।"

ଶ୍ରମକ କହିଲା, "ତୁ ଖୁବ ବୁଦ୍ଧିଆ ହୋଇଛୁ ତ ! ତୋ ହାତ ତ ଏବେ ମୋଠାରୁ ବି ବଳୁଆ ହେଲଣି !" ଦେବଦତ୍ତର ମାଂସପେଶୀକୁ ଟିକିଏ ଚିପିଦେଇ ସେ ଦୁଃଖରେ କହିଲା, "ମନକରିଥିଲେ ତୁ କେଡ଼େ ବଢ଼ିଆ ଶିକାରୀ ଆଉ ସାରଥୀ ହୋଇପାରିଥାନ୍ତୁ ରେ !"

ହସି ହସି ଦେବଦତ୍ତ କହିଲା, "ମୁଁ ବହୁତ କୁସ୍ତିକସରତ ଅଭ୍ୟାସ କରେ । ଆଉ ଶିକାର କଥା କହୁଛ—ଆମ ଆଶ୍ରମଟା ପରା ଗହନ ଜଙ୍ଗଲ ଭିତରେ । ସେଠି ତ ଜନ୍ତୁଜନ୍ତା ପଣ ପଣ ।"

"ଆରେ ଦେବଦତ୍ତ, ଆମର ଏଇ ମହାରାଜା କ ବଢ଼ିଆ ନଗର ତିଆରି କଲେଣି ତୁ ଜାଣିଛୁନା ? କୌରବମାନେ ତ ମଲେଣି, ଆଉ କ'ଣ !! ଇନ୍ଦ୍ରପ୍ରସ୍ଥ ନଗରୀର ଚରିଦିଗରେ ଘେରି ରହିଛି ଅଠ ଦମ୍ଭିଲା ପାଚେରି ଓ ଗହିରା ଗଡ଼ଖାଇ । ପାଚେରିର ମଝିରେ ମଝିରେ ଉଚ୍ଚ ଉଚ୍ଚ ସ୍ତମ୍ଭ ମଧ୍ୟରେ ଲୁଚିରହି ସୈନ୍ୟମାନେ ସଦାବେଳେ ପହରା ଦେଉଛନ୍ତି । ପାଖ ଗାଁରେ ମୋ କକା ରହନ୍ତି ନା, ସେ ଅନେକ ସମୟରେ ସେଠାକୁ ଯାଆନ୍ତି । ସେ ଗହଣା ବିକନ୍ତି । ବଢ଼ିଆ ମୋଟା ମୋଟା କଣ୍ଠହାର, ବଳା, ସ୍ତ୍ରୀ-ପୁରୁଷଙ୍କ ପାଇଁ କାନର ବଳା ସେ ବିକନ୍ତି । ନଗର ମଧ୍ୟରେ ବହୁତ ସୁନ୍ଦର ସୁନ୍ଦର ଦେଖିଲାଭଳିଆ ଜାଗା ବି ଅଛି । ରାଜାଙ୍କ ନଅର, ବଣଜନ୍ତୁଙ୍କ ରହିବା ଲାଗି ବିରାଟ ବଗିଚ୍ଚା, ବସ୍ତ୍ରଗୃହ, ଜୁଆଖେଳ ଲାଗି ଥିବା ଘର ଦେଖିଲେ ଆଖି ଖୋସିହୋଇଯିବ ।"

ଉତ୍ତେଜିତ କଣ୍ଠରେ ଦେବଦତ୍ତ କହିଲା, "ଜୁଆଖେଳ ! ଏଇ ଖେଳଲାଗି ପରା ଏତେ ଦୁର୍ଦ୍ଦଶା ହୋଇଥିଲା !"

କଳାଧନ କହିଲା, "ରାଜା, ରାଜପୁତ୍ର ଓ ଅନ୍ୟ ଧନବାନ୍ ଲୋକମାନେ ଯୁଦ୍ଧ, ଶିକାର, ଜୁଆଖେଳ ଛଡ଼ା, ଆଉ କ'ଣ କରିବେ ?"

"ଯୁଦ୍ଧବିଗ୍ରହ ତ ଏବେ ଆଉ ନାହିଁ; ରାଜାଙ୍କ ଶିକାର ଖେଳ ଯୋଗୁଁ ଜଙ୍ଗଲ ପାଖର ଗାଁମାନଙ୍କରେ ଜୀବନଯାତ୍ରା ପୂର୍ବଠାରୁ ବହୁତ ନିରାପଦ ହେଲାଣି । ଏକସମୟରେ ଚିତା-ବାଘ ଓ ଗଧିଆବାଘ ଗୁଡ଼ାକ ଏପରି ଦୁର୍ଦ୍ଦାନ୍ତ ହୋଇ ଉଠିଥିଲେ ଯେ ଗାଁମାନଙ୍କରୁ ସାନ ପିଲାଙ୍କୁ ଟାଣି ନେଉଥିଲେ । ଏବେ ବେଳେ ବେଳେ ଗାଈ ଗୋରୁଙ୍କୁ ନେଲେ ସୁଦ୍ଧା ଆଉ ମଣିଷ ମାରୁ ନାହାନ୍ତି ।"

ଶ୍ରମକ ଏଥର ସୂର୍ଯ୍ୟଙ୍କୁ ଚାହିଁଲା, କାରଣ ସୂର୍ଯ୍ୟହିଁ ଥିଲେ ତାର ଘଣ୍ଟା । ସେ କହିଲା, "ଏଥର ଆସ ଆମେ ଭଙ୍ଗା ରାଜପ୍ରାସାଦ ପାଖ ଆମର ଲଢ଼େଇ ଖେଳ ଥାନକୁ ଯିବା । ସେଠିକି ଧେନୁକ ତାର ଗାଈପଲଙ୍କୁ ଅଡାଇ ଆଣିବଣି ।"

ଜୟନ୍ତ କହିଲା, "ଦେବଦତ୍ତ ତ ଏବେ ରାଜା, ତେଣୁ ସେ ଆଉ ସୈନିକ ହେବ ନାହିଁ ।"

ଶ୍ରମକ ଉତ୍ତର ଦେଲା, "ରାଜପୁରୋହିତ ପରା ରାଜାଙ୍କ ସାଙ୍ଗରେ ଯୁଦ୍ଧକ୍ଷେତ୍ରକୁ ଯାଆନ୍ତି ! ଭଗବାନ ଶ୍ରୀକୃଷ୍ଣ ପରା ଅର୍ଜ୍ଜୁନଙ୍କର ସାରଥୀ ହୋଇଥିଲେ, ଦେବଦତ୍ତ ! ତୁ ମୋର ସାରଥୀ ହେବୁ ନାହିଁ ନା ?"

ଟିକଏନାକୁ ହସି ଦେବଦତ୍ତ କହିଲା, "ହଉ, ହେବ ।"

ଅଳୀକ କହିଲା, "ଅସ୍ତ୍ରାଗାରରୁ ପ୍ରଥମେ ଅସ୍ତ୍ର ବାଛିବାର ଅଧିକାର ତୋତେ ଦିଆଯିବ । ବଡ଼ିଆ ବଡିଆ ବଲ୍ଲମ, ଯୁଦ୍ଧ-କୁଠାର ଆଉ ଧନୁ ତିଆରି କରିଛି ଶ୍ରମକ ।" ଏ କଥା



କହୁବା ହାତେ ହାତେ ବରଗଛର ବେଣ୍ଟ କୋରଡ଼ ଭିତରୁ ସେ ସେବୁ ଅସ୍ତ୍ର ଟାଣି ଟାଣି କାଢ଼ି ଆଣିଲା ।

ଦେବଦତ୍ତ କହିଲା, "ହଁ, ଏଗୁଡ଼ା ତ ଭାରି ବଢ଼ିଆ ଦିଶୁଛି । କିନ୍ତୁ ମୋର ତ ଯୁଦ୍ଧକୁଠାର, ଧନୁଶର ବା ପଥର ଫିଙ୍ଗିବା ମୋଟେ ଲୋଡ଼ା ନାହିଁ । ପୁରୋହିତ-ମାନେ ପରା ଯୁଦ୍ଧ କରନ୍ତି ନାହିଁ ! ତାହା ଛଡ଼ା ମୋର ଏ ଠେଙ୍ଗା ଗୋଟିକ ତ କାହିଁରେ କ'ଣ !"

ଏହା ଶୁଣି ପିଲାଏ ତା'ର ଠେଙ୍ଗାଟିକୁ ଭଲକରି ଦେଖିଲେ । ଠେଙ୍ଗାଟି ଖୁବ୍ ଭାରି ଆଉ ଟାଣୁଆ । ତା'ର ଅଗଟା ମଧ୍ୟ ବଲ୍ଲମ ପରି ମୁନିଆଁ ।

ସେମାନେ ଯାଇ ଭଙ୍ଗା ନଅର ପାଖେ ପହଞ୍ଚିଲା ବେଳକୁ ଧେନୁକ ତା'ର ଗାଈପଲକୁ ଏକାଠି ଚୁଣ୍ଡେଇ ସାରିଥାଏ । ଏଇ ଗୋବାହିନୀଙ୍କୁ ଦେଖିଲେ ବି ଡର ମାଡ଼ୁଥାଏ । ସେଇ ସବୁ ଗୋରୁ ପ୍ରାଚୀନ ଭାରତର ଅଧା ଜଙ୍ଗଲୀ ବଡ଼ ଗୋରୁ ବୋଲି ଦେଖିବାକୁ ଅତି ଭୀଷଣ । ପ୍ରତ୍ୟେକ ଗାଈ ପିଠିରେ ଜଣେ ଜଣେ 'ମାହୁନ୍ତ' ମଧ୍ୟ ବସିଥାନ୍ତି । ଏଇ ମାହୁନ୍ତ-ଗୁଡ଼ିକ ହେଲେ କଳା କଳା ଦସ୍ୟୁ ପିଲା । ଧେନୁକ ତାଙ୍କୁ ଡାକିଆଣିଥିଲା ଯୁଦ୍ଧ ଖେଳରେ ମିଶିବା ଲାଗି ।

ଭୀମକର ଦଳ ଆସି ଦେଖାଦେଲା ମାତ୍ରେ ଧେନୁକ ଦଳର ପିଲାଏ ବଡ଼ପାଟିରେ ରଣ-ହୁଙ୍କାର ଛାଡ଼ିଲେ । ତାଙ୍କ ହାତୀରୂପକ ଗୋବାହିନୀଙ୍କୁ ଆଗକୁ ମାଡ଼ିଯିବା ଲାଗି ଖେଞ୍ଚି ଲାଗିଲେ । 'ପାଣ୍ଡବଦଳ'ଟି ମଧ୍ୟ ଲଢ଼େଇକୁ ତେର୍ଚ୍ଛି ପଡ଼ିଲେ, କାରଣ ତାଙ୍କ ଦଳଟା ଥିଲା ରଥବାହିନୀ । ତାଙ୍କ ହାତର ବଲ୍ଲମଗୁଡ଼ିକ ମୁଣ୍ଡଉପରକୁ ଉଞ୍ଚାଇ ସେମାନେ ପ୍ରବଳ ରଡ଼ି କରୁ କରୁ ଆଗକୁ ଧାଇଁଲେ । ଗୋବାହିନୀଟି ପ୍ରଥମେ ଭାରି ଦମ୍ଭ ହୋଇ ରହିଲା, କିନ୍ତୁ ଆର ଦଳଟି ପାଖକୁ ମାଡ଼ି ଆସନ୍ତେ ହଠାତ୍ ମଝିରୁ ଦୁଇଭାଗ ହୋଇଗଲା । 'ପାଣ୍ଡବଦଳ' ମଝିର ସେଇ ଫାଙ୍କା ବାଟରେ ଆଗକୁ ଧାଇଁ ଚାଲିଲେ । ଗୋରୁପଲ ଏଥର ପଛଦୁଆରା ଦେଇ ଏକ୍ରୀଳ



ତେଣିକି ଦୌଡ଼ୁଥାନ୍ତି । ଏଥର ରଥବାହକମାନେ ହାତାବାହକମାନଙ୍କୁ ପୁରା ହରାଇ ଦେଲେ; କାରଣ ଏ ପଟ୍ଟ ଦଳଟା ହୁରୁଡ଼ି ଖାଲି ଏଣେ ତେଣେ ଧାଉଁଥାନ୍ତି ।

ହମ୍ବା ହମ୍ବା ରଡ଼ିକରି ପଳାଉଥିବା ଗାଈପଲ ମଧ୍ୟରୁ ହଠାତ୍ ଗୋଟାଏ କରୁଣ ଚିତ୍କାର ଶୁଭିଲା । ଜଙ୍ଗଲରେ ଟିକିଏ ଦୂରକୁ ଚାଲିଯାଇଥିବା ଗୋଟିଏ ଗାଈକୁ ଚିତାବାଘଟାଏ ଆକ୍ରମଣ କରିଛି । ପିଲାଏ ତ ହେଲେ ଜଙ୍ଗଲବାସୀ—ସେମାନେ ଜଙ୍ଗଲର ହିଂସ୍ର ଜନ୍ତୁଙ୍କ କବଳରୁ ତାଙ୍କ ପାଳିତ ଗାଈଙ୍କୁ ରକ୍ଷାକରିବା କୌଶଳ ଭଲଭାବେ ଜାଣିଥିଲେ । ସମସ୍ତେ ବାଡ଼ିଟାଳି ରଡ଼ି କରୁ କରୁ ବାଘକୁ ଆକ୍ରମଣ କଲେ । ଧେନୁକ ତା' ଠେଙ୍ଗାରେ ବାଘକୁ ପିଟିଲାଗିଲା । ଗାଈପଲର ବଡ଼ ଷଣ୍ଢଟା ଏଥର ରଡ଼ି ଛାଡ଼ି ଆସି ବାଘ ଉପରକୁ କୁଦି ପଡ଼ିଲା । ଗାଈପଲ ଷଣ୍ଢକୁ ଆଗକୁ ଛାଡ଼ିଦେଲେ । ପିଲାଏ ମଧ୍ୟ ତା' ଲାଗି ବାଟ ଛାଡ଼ିଦେଲେ । ଷଣ୍ଢକୁ ବାଟ ଛାଡ଼ି ଧେନୁକ ଟିକିଏ କଡ଼େଇ ଯାଇଛି କି ନାହିଁ ଚିତାବାଘଟା କଡ଼କୁ ଡେଇଁପଡ଼ି ବୁଦା ଭିତରକୁ ପଳାଇଲା ।

ପିଲାମାନେ ଖୁସିରେ ବିଜୟର ଜୟଧ୍ୱନି ଛାଡ଼ିଲେ । କିନ୍ତୁ ହଠାତ୍ ଗୋଟିଏ କରୁଣ ଚିତ୍କାର ଶୁଣି ପିଲାଙ୍କ ହାଲୁକା ଶୁଖିଗଲା । ବିଶେଷତଃ ଧେନୁକକୁ ଭାରି ଡର ମାଡ଼ିଲା । ସେଇ କରୁଣ ଚିତ୍କାରଟି କରିଥିଲା ଗୋଟିଏ ଛୋଟ ଝିଅପିଲା । ଧେନୁକ ତା'ର ପାଟିରୁ ବାରିପାରିଲା ଯେ ଏ ଚିତ୍କାର ତା'ର ଭଉଣୀର ।



## ଛତାବାଘ ମୁହଁରୁ ବଞ୍ଚିଗଲା—

ବୁଦ୍‌ବୁଦକିଆ ବଣ ଭିତରେ ଲୁଚିରହି ଦେବୀ ପିଲାଙ୍କ ଲଢ଼େଇଖେଳ ଦେଖୁଥିଲା । ସେ ଠିକ୍ ପଦାକୁ ବାହାରି ଆସିଲା ବେଳକୁ ତାକୁ ଛତାବାଘଟା ହାବୁଡ଼ିଲା । ବାଘଟା ଠିକ୍ ଦେବୀ ଉପରକୁ କୁଦି ପଡ଼ିଲା ବେଳକୁ ଶ୍ୟାମକ ଓ ଧେନୁକ ଧାଇଁ ଆସିଲେ । ତାଙ୍କ ପଛେ ପଛେ ଆଉ ପିଲାଏ ମଧ୍ୟ ଆସୁଥାଆନ୍ତି; କିନ୍ତୁ ମନେହେଉଥାଏ ଯେ ପିଲାଟିକୁ ବୋଧହୁଏ ରକ୍ଷା କରି ହେବ ନାହିଁ । ସେମାନେ ବାଘର ପଛପଟୁ ତାକୁ ପିଟି ପିଟି ସେ ଦେବୀକୁ ଧରିସାରିଥିବ ।

ଦେବଦତ୍ତ କିନ୍ତୁ ସମସ୍ତଙ୍କ ଆଗକୁ ମାଡ଼ିଗଲା । ସେ ତାର ମୋଟା ଠେଙ୍ଗାଟିକୁ ମୁଣ୍ଡ ଉପରେ ଉଞ୍ଚେଇଥାଏ । ବାଘଟା ଆଁ କରି ଦେବୀ କାନ୍ଧରେ ଠିକ୍ ପାଦ ପକାଇବା ପୂର୍ବ ମୁହୂର୍ତ୍ତରେ ଦେବଦତ୍ତ ତାର ଠେଙ୍ଗାଟି ବାଘ ପାଟିରେ ଗେଞ୍ଜିଦେଲା ।

ଦେବୀର କାନ୍ଧରୁ ବୋହି ଆସିଲା ଲାଲ ଲାଲ ଲହୁ । ଛତାବାଘର ଲଣ୍ଡିଟି ଝୁଲିପଡ଼ିଲା । ତା'ର ଦେହଟା ଛଟ ଛଟ ହୋଇ ଏକଦମ୍ ରହିଗଲା । ବାଘର ପ୍ରାଣବାୟୁ ଉଡ଼ିଗଲା । ଡରରେ ଦେବୀ ରଡ଼ୁଥାଏ ସତ କିନ୍ତୁ ତାକୁ ଆଉ କାଟୁ ନଥାଏ ।



ଫେରନ୍ତା ରାସ୍ତାରେ ଶ୍ୟାମକ ତାକୁ ବାରମ୍ବାର ପଚାରୁଥାଏ, "ତୋର କଣ ଖଣ୍ଡିଆ ହୋଇଛି—କେଉଁଠି ଖଣ୍ଡିଆ ହୋଇଛି ?"

କୁନ୍ଥେଇ କୁନ୍ଥେଇ ଦେବୀ କହିଲା, "ମୁଁ ଜାଣିପାରୁନାହିଁ ।" ତା'ପରେ ସେ ପୁଣି ଜୋର୍‌ରେ କାନ୍ଦିଲା ।

ଏଥର ଦେବଦତ୍ତ ଆଗେଇ ଆସି ନେତୃତ୍ୱ ନେଲା । ଦେବୀକୁ କହିଲା, "ମୁଁ ଜାଣିଛି ତୋର କିଛି ହୋଇନାହିଁ । ତୋ ଦେହରେ ଯେଉଁ ଲହୁ ପଡ଼ିଛି, ସେ ଲହୁ ହେଲା ଏ ବାଘର; କାହିଁକନା, ଲଢ଼େଇରେ ତୁ ବାଘକୁ ଜିତିଛୁ । ତୋର ମଲ୍ଲ ଶତ୍ରୁକୁ ଅନାଇ ତାକୁ ଛି ଛି କର । ହେଇଟି ତୋ ଶତ୍ରୁକୁ ତୋର ଏଇ ବଲ୍ଲମରେ କେଞ୍ଚି ଦେ ।" ଏହା କହି କହି ସେ ଦେବୀକୁ ଗୋଟିଏ ଗ୍ରେଟିଆ ବାଡ଼ି ଧରାଇଦେଲା ।

ଦେବୀର ଆଖିରୁ ଲୁହ ଶୁଖିଗଲା । ସେ ଅଳ୍ପ ହସି ସେଇ ବାଡ଼ିଟି ହଲାଉଥାଏ । ଥଙ୍ଗେଇ ଥଙ୍ଗେଇ ସେ ପଚାରିଲା, "ଏ କଣ ମୋ ଲହୁ ନା ବାଘର ?"

ଦେବଦତ୍ତ ତାକୁ କହିଲା, "ଆ, ସେଇ ଗାଡ଼ିଆ ପାଖକୁ ଯିବା । ତୋ ଦେହର ଏ ଲହୁକୁ ଧୋଇପକାଇଲେ ତୁ ନିଜେ ବି ଦେଖିପାରିବୁ ।"

ସେମାନେ ଗାଡ଼ିଆକୁ ଗଲେ । ଦେବୀ ଧୋଇଧାଇ ହୋଇ ଲହୁତକ ସବୁ ସଫା କରି ପକାଇଲା । ଶ୍ରୀମକ ଯେତେବେଳେ ଦେଖିଲା ସେ ତା'ର ସାନ ଭଉଣୀର କିଛି ହୋଇନାହିଁ, ସେ ରାଗରେ ତାକୁ ଗାଳି ଦେଲା । ଗାଳି ଶୁଣି ଦେବୀ ପୁଣି କାନ୍ଦିଲା ।

ଦେବଦତ୍ତ ଆଗେଇ ଆସି କଥାଟାକୁ ଖଣ୍ଡି ଦେଲା । କହିଲା, "ତାକୁ ଆଉ ଗାଳି ଦେବା କି ଦରକାର ? ସେ ତ ବାଘମୁହଁରେ ପଡ଼ିସାରିଛି । ସେଥିକି ତା' ପକ୍ଷରେ ବହୁତ ଶିକ୍ଷା ହୋଇଛି । କଲେ ଦେବୀ, ତୁ ଆଉ ଏକା ଜଙ୍ଗଲକୁ ଆସିବୁ ?"

ଦେବୀ ଦେବଦତ୍ତର ପାଖକୁ ଲଗିଯାଇ ତା' ହାତ ଧରି କହିଲା, "ମୁଁ ରାଣ ଖାଉଛି, ଆଉ କେବେ ଆସିବ ନାହିଁ ।" ଏଥର ସେମାନେ ଫେରିଆସିଲେ ମଲ୍ଲ ଚିତା-ବାଘ ପାଖକୁ ।

ଏହାର ଭିତରେ ମଲ୍ଲ ବାଘଟିକୁ ଛାଲିବାକୁ ଛୁରୀ ଆଣିବା ଲାଗି ଦସ୍ୟୁ ପିଲାଏ ଗାଁକୁ ଧାଇଁଗଲେ । ତାଙ୍କ ଗାଁ ଅତି ପାଖରେ । ମଲ୍ଲକନ୍ଧଙ୍କ ଛାଲ ଛଡ଼ାଇବା ବିଦ୍ୟା ମଧ୍ୟ ଏ ଦସ୍ୟୁ ପିଲାଙ୍କୁ ଭଲ ରକମ ଜଣାଥାଏ ।



ଅନ୍ୟ ପିଲାଏ ମଲାବାଘଟିକୁ ଘେରି ଯାଇଥାନ୍ତି । ଦେବଦତ୍ତ ଆଡ଼କୁ ପ୍ରଶଂସାମିଶା ଚାହାଁଣିରେ ଅନାଇ ସେମାନେ କହିଲେ, "ଓଃ ! କି ବଢ଼ିଆ ମାଡ଼ ! ତୁମ ଆଶ୍ରମରେ କ'ଣ ଏହା ବି ଶିଖାନ୍ତି ? ତେବେ ଚାଲ ଆମେ ବି ସେଇଠି ପାଠ ପଢ଼ିବୁ ।"

ଏମାନଙ୍କ ପ୍ରଶଂସା ଶୁଣିବା ପରେ ମଧ୍ୟ ଦେବଦତ୍ତ ଆଗପରି ନମ୍ର ହସ ହସି କହିଲା—"ମୁଁ ଆମ ଗୁରୁଙ୍କୁ ଦେଖିଥିଲି ଠିକ୍ ଏହିପରି ମାଡ଼ ମାରି ଗୋଟିଏ ଭାଲୁ କବଳରୁ ଜଣେ ଶିଷ୍ୟଙ୍କୁ ସେ ରକ୍ଷା କରିଥିଲେ ।"

ଧେନୁକ କହିଲା, "ଆମେ ଏ ବାଘଟିକୁ ପଛେ ଛାଲିଦେବୁ, ତେବେ ତୁ ବାଘ ଚମଡ଼ାକୁ ଜୟଚିହ୍ନରୂପେ ପିନ୍ଧିବୁ ।"

ଦେବଦତ୍ତ ପୂର୍ବପରି ଧୀରେ କହିଲା, "ଧେନୁକ, ଆଗ ଛୋଟ ଗାଈର ଖବର ବୁଝିବୁ !" ବାଘକୁ ଚାହିଁ ଦେବୀ ଡରରେ ଥରୁଛି ଦେଖି ଦେବଦତ୍ତ ତାକୁ ହାତ ବଢ଼ାଇ ଧରିନେଲା । ତହୁଁ ସେ ଦେବୀକୁ ଭୁଲାଇବାକୁ କହିଲା, "ଆଲୋ କୃଷ୍ଣା ମୁଣ୍ଣୀ ! ଚାଲ ଆମେ ସେ ଗାଈର ଖବର କଣ ହେଲା ଦେଖିବା । ବାଘଟା ପରା ତାକୁ ଦାନ୍ତ ଆଉ ନଖରେ ବିଦାରି ପକାଇଛି ! ତୋଠୁଁ ପରା ତାର ଅଧିକ ଖଣ୍ଡିଆ ହୋଇଛି !"

ସେତେବେଳେ ବି ଗାଈଟା ବଡ଼ ବିକଳରେ ହମ୍ବାଉଥାଏ । ସେ ବି ଦେବୀପରି ରଡ଼ି କରୁଥାଏ ଡରରେ—ଆଘାତର କଷ୍ଟ ଲାଗି ନୁହେଁ । ଦେବଦତ୍ତ ଯାଇ ତାକୁ ଆସ୍ତେ ଆସ୍ତେ ଅସ୍ତୁ କଲା । ଗାଈଟିକୁ ପାଣିପାଖକୁ ଅଡ଼ାଇନେଇ ଅତି ଧୀରେ ସେ ତା'ର କ୍ଷତ ଧୋଇଦେଲା । ତା'ର ଚମଡ଼ା ଚିରିଯାଇ ଲହୁ ବୋହୁଥିଲେ ସୁଦ୍ଧା କ୍ଷତଗୁଡ଼ିକ ଗଭୀର ହୋଇ ନଥିଲା ।

ଦେବଦତ୍ତ କହିଲା, "ଆସ ତାର ଖଣ୍ଡିଆ ଯାଗାଗୁଡ଼ିକରେ ଦୁଧେଇଲଟା ଛେଚି ବୋଳି ଦେବା— ତେବେ ତାର ଜଳାପୋଡ଼ା କମିଯିବ ଯେ ।" ଏ କଥା ଶୁଣି ଦେବୀ ଯାଇ ଗୋଟିଏ



ଦୁଧେଇଲଣ୍ଠା ଗଛ ଖୋଜି ଆଣିଲା । ତାର ବଡ଼ ବଡ଼ ପତ୍ର ଆଣି ଛେଚି ଦେଇ ସେ ପତ୍ରଟିକୁ ଗାଈର ଖଣ୍ଡିଆ ଥାନରେ ବୋଳିଦେଲେ । ଗୋଟିଏ ଲଟା ଛିଣ୍ଡାଇ ଆଣି ପତ୍ରଟିକୁ ଗାଈ ଦେହରେ ବାନ୍ଧି ଦେଲେ । ଏହାପରେ ଗାଈଟିକୁ ଭଲ ଘାସ ପଡ଼ିଆକୁ ନେଇ ଯିବାକୁ ସେ ଧୀରେ ଧୀରେ ଅଗ୍ରସରିଗଲା ।

ଦେବଦତ୍ତର ଏ ବିଦ୍ୟା ଦେଖି ଧେନୁକ ତାକୁ ପ୍ରଶଂସା କରି କହିଲା, "କିରେ, ତୁ ତ କ'ଣ ସେମିତି ଭଲ ଶିକାରୀ ସେମିତି ଭଲ ଗାଈଆଳ ! ତୁ ତ ମୋ ପରି ଗାଈର ଯତ୍ନ ବି ନେଇ ପାରୁଛୁ ?"

ଦେବଦତ୍ତ ଉତ୍ତର ଦେଲା, "ଆଶ୍ରମରେ ପରା ପଚାଶ ଗାଈ ଅଛନ୍ତି । ତାଙ୍କୁ ଚରାଇବାକୁ ନେଲେ ବଡ଼ ସାବଧାନରେ ଜଗିବାକୁ ପଡ଼େ । ଆମ ଆଶ୍ରମର ଚରଭୂଇଁଗୁଡ଼ିକ ବହୁତ ଦୂର । ସେଠାରେ ବଣ ବି ଏଠା ଅପେକ୍ଷା ବହୁତ ଗହଳ ।"

ପେଟୁଆ ଜୟନ୍ତ ପଚାରିଲା, "ଆଶ୍ରମରେ ତୁମେ ସବୁ କ'ଣ ଖାଅ ?" ନିଜର ଖାଇବାରେ ଜୟନ୍ତର ଯେତିକି ଆଗ୍ରହ ଅନ୍ୟ ପିଲାଏ କ'ଣ ଖାଆନ୍ତି ଜାଣିବାକୁ ମଧ୍ୟ ତା'ର ସେତିକି ଆଗ୍ରହ ।

ଦେବଦତ୍ତ ଉତ୍ତର ଦେଲା, "ଆମେ ଆଉ ସମସ୍ତଙ୍କ ପରି ଭାତ, ଗହମ, ଯଅ, ଦୁଧ ଓ ମାଂସ ଖାଉ । ତେବେ ଅନ୍ୟ ଚଳ ଅପେକ୍ଷା ମାଂସ କମ୍ ଖାଉ ।"

ଏ କଥା ଶୁଣି ଅଲୀକ କହିଲା, "ତେବେ ସେ ଦୁଧହିଁ ତୋତେ ଏତେ ବଳୁଆ କରିଛି ।"

ଦେବଦତ୍ତ କହିଲା, "ଆମେ ବହୁତ ଦୁଧ, ଦହି, ଲହୁଣୀ, ଘିଅ ଖାଉ ସତ, ତେବେ ଆମକୁ ବହୁତ ଉପାସ ପାଳିବାକୁ ପଡ଼େ । ଆମ ଉପାସ ସଂଖ୍ୟା ତୁମଠୁ ଅଧିକ । ଆମର କଠିନ ଜୀବନଯାପନହିଁ ଆମକୁ ବଳୁଆ କରିଛି ।"

ହଠାତ୍ ଦେବୀର ଦେହ ଖରାପ ହୋଇ ଥରିବାକୁ ଲାଗିଲା । ଏହା ଦେଖି ଦେବଦତ୍ତ କହିଲା, "ଆସ ଥାଅ, ଆମେ ଏଇଟିକୁ ମାଉସୀଙ୍କ ପାଖକୁ ନେଇଯିବା ।"

ଅଲୀକ କହିଲା, "ବାଘ ଯେ ଗାଈଟିର ପିଠି ଚିରି ଫାଳଫାଳ କରିଥିଲା ଗାଈଟି ସେ କଥା ଭୁଲିଗଲାଣି । କିନ୍ତୁ ବାଘର ଦାନ୍ତ ଯେ ଦେବୀର କାନ୍ଧରେ ପ୍ରାୟ ଗଳିବାଯାଏ ଯାଇଥିଲା ଏ କଥା ଏବେ ସୁଦ୍ଧା ଦେବୀ ମନେପକାଉଛି ।"

ଦେବଦତ୍ତ କହିଲା, "ଜୀବଜନ୍ତୁଙ୍କଠାରୁ ମଣିଷର ସ୍ମୃତିଶକ୍ତି ଅଧିକ ସ୍ଥାୟୀ ରହେ ।" ଜୟନ୍ତ କଦଳୀ ପତ୍ରରେ ଗୁଡ଼ାଇ ଯେଉଁ ବଡ଼ ଲଡ଼ୁ ପୁଡ଼ାଟି ଆଣିଥିଲା ତାକୁ ନେଇ ସେହି ଦସ୍ୟୁପିଲାଙ୍କୁ ଦେଲା ଧେନୁକ । ସେମାନେ ଧେନୁକ ଆଗରେ ଜବାବ କଲେ ଯେ



ରଧିଆବାଘ ଆଉ ବିଲୁଆ ଆସି ମଲାବାଘଟିକୁ ଖାଇବା ପୂର୍ବରୁ ସେମାନେ ତାର ଚମଡ଼ା ଛାଲିଦେବେ ଓ ଉଠାଇକରି ସାଇତି ରଖିବେ ।

ଏହା ପରେ ପରେ ସମସ୍ତେ ଘରକୁ ବାହୁଡ଼ିଲେ । ସାରାଦିନର ଧାଁଧପଡ଼ ଏବଂ ଉତ୍ତେଜନା ଯୋଗୁଁ ଦେବୀର ଆଖି ଲାଗିଆସୁଥିଲା ବୋଲି ଶ୍ରୀମକ, ଅଲୀକ ଓ ଦେବଦତ୍ତ ପାଳିକରି ତାକୁ କାଖକରି ନେଇଥିଲେ । ଶ୍ରୀମକର ମା ଘରକୁ ଫେରିଆସିବାର ଅଳ୍ପ ସମୟ ପୂର୍ବରୁ ସେମାନେ ଦେବୀକୁ ନେଇ ଘରେ ପହଞ୍ଚିଗଲେ ।

ସେ ଗୋଟିଏ ଚଟେଇ ଉପରେ ଗଡ଼୍ ଗଡ଼୍ ଶୋଇଗଲା । ଶ୍ରୀମକର ମା ଘରେ ପହଞ୍ଚି ତାଙ୍କ ପୁଅର ସାଙ୍ଗ ଆସିଥିବା ଦେଖି ତାକୁ ସ୍ନେହ ସମ୍ଭାଷଣ ଜଣାଇଲେ । ଆଶ୍ରମ-ଜୀବନର ଖବର-ଅନ୍ତର ମଧ୍ୟ ପଚାରିଲେ । ଦେବଦତ୍ତ କଥା ପ୍ରସଙ୍ଗରେ ଦେବୀ ଚିତାବାଘ ମୁହଁରେ ହାବୁଡ଼ିବା ଘଟଣା ତାଙ୍କୁ ଜଣାଇଲା । ଶେଷରେ ସେ କହିଲା, "ଦେବୀ ଆଉ କେବେ ଏକୁଟିଆ ହୋଇ କୁଆଡ଼କୁ ଯିବ ନାହିଁ ।"

ଦେବୀର ନିଦ ଭାଙ୍ଗି ଯାଇଥିଲା । ସେ ସବୁ କଥା ମନଦେଇ ଶୁଣୁଥିଲା । ତା ମାଆଙ୍କ ଆଡ଼କୁ ସେ ବଡ଼ ବଡ଼ ଆଖିରେ ଡର ଡର ଅନାଇଲା । ଏଥର ତା ମା ତାକୁ କୋଳେଇ ନେଇ ନିଜ ଛାତିରେ କୁଣ୍ଢାଇ ଧରିଲେ । ଏଥିରୁ ଦେବୀ ବୁଝିପାରିଲା ଯେ ମା ତାର ଦୋଷ ମାଫ୍ କରିଛନ୍ତି ।

ଏତେବେଳକୁ ଦେବୀର ସବୁ ଡର ଛାଡ଼ିଯାଇଥାଏ । ମା ପାଖରୁ ଗାଳିର ଭୟ, ପୁଣି ଚିତାବାଘର ଭୟ ସବୁ ଚାଲିଯାଇଥାଏ । ସେ ବି କଥାବାର୍ତ୍ତାରେ ମିଶିଲା—"ଧେଲୁନ କାଲି

ଚଡାବାଘ ଗୁଳଝା ନେଇ ଆସିବ । ସେ ଅଲ୍ପ ଦଣ୍ଡ ପିଇବ ପର ଗୁଳଝାକୁ ଛଡ଼ାଇଛନ୍ତି !"
ଦେଖୀର କଥାଗୁଡ଼ାକ ନଜରେ ମାଡ଼ ମାଡ଼ ଆସୁଥାଏ ।

ଦେବଦତ୍ତ ଶ୍ରମକର ମା'କୁ ପଚାରିଲେ, "ବାଘ ଗୁଳଝା ଆପଣ ଭକିବେ କ ? ସହରେ ଏହା ଖୁସି ଶୀଘ୍ର ସମ୍ଭାଳିବ ।"

ସେ ତୁରନ୍ତ ଉତ୍ତର ଦେଲେ, "ନାହିଁ ନାହିଁ, ମୋର ଦରକାର ନାହିଁ । ସେଇଝା ଯୋଡ଼େଇ ହେଲେ ମୁଁ ବହୁତ ଦୁଃସ୍ୱପ୍ନ ଦେଖିବି ।" ତା'ପରେ ସେ ପଚାରିଲେ, "ଦେବଦତ୍ତ, ତୁମେ ଏଠି କେତେ ଦିନ ରହିବ ?" ଦେବଦତ୍ତ କହିଲେ, "ଆମ ଗୁରୁଦେବ ଦେବମିତ୍ର ଶକଲ୍ୟ ଆଶ୍ରମକୁ ଫେରିବାଯାଏ ମୁଁ ଏଠି ରହିବି । ସେ ଇନ୍ଦ୍ରପ୍ରସ୍ଥ ଯାଇଛନ୍ତି ରାଜାଙ୍କ ଡକରା ହୋଇଛି ବୋଲି । ସେଠାରେ ମହାରାଜା ଯୁଧିଷ୍ଠିର ନିକଟରେ ଅଶ୍ୱମେଧ ଯଜ୍ଞ କରିବେ ।"

"ତୁମେ ତ ଶୁଣିଥିବ ଯେ କେବଳ ରାଜଚକ୍ରବର୍ତ୍ତୀ ମହାରାଜାମାନେ ଏ ଉତ୍ସାହ ଯଜ୍ଞ କରିପାରନ୍ତି । ଏ ରାଜାଙ୍କ ଶତ୍ରୁକୁ ଯିଏ ନମାନେ ଯିଏ ବର୍ଷେକାଳ ମନଇଚ୍ଛା ବୁଲୁଥିବା ତାଙ୍କର ଯଜ୍ଞଘୋଡ଼ାଟିକୁ ଅଟକାଇ ପାରେ । ଏବେ ବର୍ଷ ପ୍ରାୟ ପୂରିଲାଣି । ସବୁ ଦେଶର ରାଜାମାନେ ଧର୍ମରାଜଙ୍କୁ ରାଜଚକ୍ରବର୍ତ୍ତୀ ବା ସମ୍ରାଟ ବୋଲି ମାନି ସାରିଲେଣି । ତେଣୁ ଗୋଟିଏ ବଡ଼ ଅଶ୍ୱମେଧ ଯଜ୍ଞ ଏବେ ହେବ । ପ୍ରଧାନ ଆଶ୍ରମଗୁଡ଼ିକର ଗୁରୁମାନଙ୍କୁ ରାଜଧାନୀକୁ ଡକରା ହୋଇଛି । ଏ ଦେଶର ସବୁ ବଡ଼ ନଦୀ ଗଙ୍ଗା, ଯମୁନା, ଶୋଣ, ଗଣ୍ଡକ ଆଦିର କୂଳରେ ଥିବା ମହର୍ଷିମାନଙ୍କୁ ମଧ୍ୟ ନିମନ୍ତ୍ରଣ ଦିଆଯାଇଛି ।"

ଏତିକ ବେଳେ ଦେଖୀ ତାଙ୍କ କଥାମଝିରୁ ବାହାରିପଡ଼ି କହିପକାଇଲା, "ମୁଁ ଶୋଇ ପଡ଼ିବା ପୂର୍ବରୁ ଦେବଦତ୍ତ ନନାଙ୍କର ଗାଈ ପ୍ରତି ଓ ମୋ ପ୍ରତି ସ୍ନେହ ଲାଗି ତାଙ୍କୁ କୃତଜ୍ଞତା ଜଣାଉଛି ।"

ଶ୍ରମକ ହସିପକାଇଲା, "ଆମେ ତ ଜାଣିଥିଲୁ ଦେବଦତ୍ତ ଆଶ୍ରମରେ ଖୁବ ବେଦ ପଢ଼ି ଜଣେ ପଣ୍ଡିତ ହେବ । କିନ୍ତୁ ସେ ଯେ ଜଣେ ଦକ୍ଷ ଶିକାରୀ ! ଉଃ ! ଶାଦ୍ଧାଳିଆ ! ଏପରିକି ଜଣେ ଶିଶୁସ୍ନେହୀ ମଣିଷ ବି ! ତାହା ତ ଆମେ ଭାବିପାରିନଥିଲୁ ।"

ଶ୍ରମକର ମା କଥା ନେଇ କହିଲେ, "ସେ ଯେ ସବୁ କାମ କରିପାରୁଛି, ଏହାହିଁ ହେଉଛି ତା' ଶିକ୍ଷାର କରାମତି ।"

# ପାଟଳିପୁତ୍ର ସଡ଼କର ବିଶ୍ରାମ-ଗୃହରେ

ପାଟଳିପୁତ୍ରକୁ ଯାଉଥିବା ସଡ଼କ କଡ଼ରେ ଗୋଟିଏ ବିଶ୍ରାମଗୃହ । ସେଠାରେ ଖୁବ୍ ଗହଳ ଚହଳ ଲାଗିଛି । ପୂର୍ବଦିଗରୁ ଏକ ବଡ଼ ବେପାରୀଦଳ ଏବେ ଆସି ପହଞ୍ଚିଛନ୍ତି । ବିଶ୍ରାମ-ଗୃହଟି ସମ୍ରାଟ ଅଶୋକଙ୍କ ଆଦେଶରେ ତିଆରି ହୋଇଥାଏ । ଅଶୋକ ମୌର୍ଯ୍ୟ ବଂଶର ତୃତୀୟ ଓ ଶ୍ରେଷ୍ଠ ନରପତି ଥିଲେ ।

ବୌଦ୍ଧଧର୍ମ ପ୍ରଭାବରେ ତାଙ୍କର ବିଶାଳ ସାମ୍ରାଜ୍ୟରେ ଅଶୋକ ଅନେକ ପ୍ରକାର ପରିବର୍ତ୍ତନ ଆଣିଥିଲେ । ସେ ରାଜ୍ୟର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ବହୁତ ସଡ଼କ ତିଆରିଥିଲେ । ପ୍ରଜାଙ୍କର ଭଲମନ୍ଦ କଥା ବୁଝିବା ଲାଗି ସେ ନିଜେ ଓ ଅନ୍ୟ ରାଜକର୍ମଚାରୀମାନେ ଏ ସବୁ ସଡ଼କ ବାଟେ ଯାତାୟାତ କରୁଥିଲେ । ବେପାରୀ ଓ ତୀର୍ଥଯାତ୍ରୀ ବହୁ ଦୂରକୁ ନିରାପଦରେ ଓ ସହଜରେ ଯାଇ-ଆସି ପାରୁଥିଲେ । ଜଙ୍ଗଲ ସଫାହୋଇ ନୂଆ ବସତି ବସିଥିଲା । ପୁରୁଣା ସହର ଓ ଗ୍ରାମମାନଙ୍କ ଅପେକ୍ଷା ଏ ନୂଆ ବସ୍ତିର ଗଢଣୀ ଥିଲା ସରଳ ଓ ସହଜ ।

ବିଶ୍ରାମ ଗୃହର ଜଗୁଆଳ ପରିବାରଟି ଟିକିଏ ନୂଆ ପ୍ରକାରର—ସତେକି ଦେଶର ବିଭିନ୍ନ ଅଞ୍ଚଳର ଲୋକ ସେଥିରେ ମିଶିଛନ୍ତି । ଜଗୁଆଳ ନିଜେ ଦରବୁଢ଼ା । ତା'ର ଚେହେରା ସୈନିକ ପରି ସିଧା ଓ ଲମ୍ବା । ତା ମା'ର ଆକୃତି ଟିକିଏ ଶୀର୍ଣ୍ଣ ହେଲେ ବି ସେ ତା ପୁଅପରି ଦେଖିବାକୁ । କିନ୍ତୁ ତା' ସ୍ତ୍ରୀଟିର ଆକାର ବାଙ୍ଗରା, ରଙ୍ଗ ଅଧିକ କଳା । ତା' ପିଲାଙ୍କ ମଧ୍ୟରେ ହିଁ ସବୁଠାରୁ ଅଧିକ ପ୍ରଭେଦ ଦେଖାଯାଉଥିଲା । ସାନଦୁଇଜଣଙ୍କ ଭିତରୁ ଗୋଟିଏ ପୁଅ, ଆରଟି ଏକଦମ୍ କୋଳର ଝିଅ । ସେ ଦୁହେଁ ଦେଖିବାକୁ ଏକା ପ୍ରକାରର । କିନ୍ତୁ ବଡ଼ ପିଲାଟି ହେଲା ଝିଅ । ତା'ର ରଙ୍ଗ କଳା, ମୁଣ୍ଡରେ କୁଞ୍ଚୁକୁଞ୍ଚିଆ ବାଳ ଆଉ ଓଠ ଦିଓଟି ମୋଟା ମୋଟା ।





ଉପରଓଳିକ ବିଶ୍ରାମଗୃହଟି ଭରତି ହୋଇ ଯାଇଥାଏ । ଅନ୍ଧାର ହେବାର ବହୁତ ଆଗରୁ ଯାତ୍ରୀମାନେ ଆଶ୍ରୟ ଖୋଜିନେଇ-ଥିଲେ, କାରଣ ସବୁଆଡ଼େ ବଣରେ ଥାନ୍ତି ବହୁତ ହିଂସ୍ରଜନ୍ତୁ । ତାମ୍ରଲିପ୍ତ ବନ୍ଦରର ଜଣେ ବେପାରୀ ରାଜଧାନୀର ବଜାରକୁ ଯାଉଥାଏ । ତାହା ସହିତ ଅନେକ ଶଗଡ଼ ବୋଝେଇ ହୋଇ ମାଲମସଲା, ସୁଗନ୍ଧିଦ୍ରବ୍ୟ ଓ ଲୁଗାଗଣ୍ଠି ଥାଏ । ମହାରାଜାଙ୍କର ପାଞ୍ଜିଆ ଓ ପଥଦର୍ଶକ କାର୍ଯ୍ୟ କରୁଥିବା ଜଣେ ରାଜକର୍ମଚାରୀ ମଧ୍ୟ ସେଠି ରହିଥାନ୍ତି । ଏହାଙ୍କ ଛଡ଼ା ଆଉ ଦୁଇ ଜଣ ଯାତ୍ରୀ ଥିଲେ—ଦେଶର ସବୁ ଧର୍ମପୀଠ ଦେଖି ଦେଖି ବୁଲୁଥିବା ଜଣେ ବାଘଛାଲପିନ୍ଧା ସନ୍ନ୍ୟାସୀ ଓ ଗୌଡ଼ (ବଙ୍ଗ) ଦେଶର ଜଣେ ଯୁବକ ଛାତ୍ର । ସେ ଯାଉଥିଲେ ବହୁତ ଦୂରର ତକ୍ଷଶିଳା ବିଶ୍ୱବିଦ୍ୟାଳୟକୁ ।

ବିଶ୍ରାମଗୃହ ନିକଟର କୂପରେ ସେମାନେ ଅଙ୍ଗ ଧୁଆଧୋଇ ହୋଇ ଆସି ପେଟ ପୂରାଇ ଖାଇଦେଲେ । ତା' ପରେ ଅଗଣାରେ ବସି ଗପସପ ହେଲେ । ଜଗୁଆଳ ଓ ତା'ର ମା' ମଧ୍ୟ ତାଙ୍କ ପାଖରେ ବସି ଆଗ୍ରହରେ କଥା ଶୁଣୁଥାନ୍ତି । ବେପାରୀଜଣକ ପାଟଳିପୁତ୍ରର ବଜାର ଓ ଜନପଦ କଥା କହୁଥାଏ । ଜଗୁଆଳର ସ୍ତ୍ରୀ ସେଇ ବାଟରେ ତରବର ହୋଇ ଚାଲିଯାଉଥିଲା । ତା'ର ସ୍ୱାମୀ ତାକୁ ଡାକପକାଇଲା, "ଆରେ ଏଠି ମା ପାଖେ ଆସି ବସ । ଏ ସାଧବ ବେପାରୀ ଜଣେ କେତେ କଥା କହୁଛନ୍ତି । ଉତ୍ତର ଦେଶର ଚମଡ଼ା, ଶାଲ୍ୱ, ବହୁ ରଙ୍ଗର ସୂତାଲୁଗା, ବଢ଼ିଆ ରେଶମ, ଲୁହାଛୁରୀ ଓ ଅସ୍ତ୍ରଶସ୍ତ୍ର—ଆଉ କେତେ କେତେ ଚିଜ କଥା ସେ କହୁଛନ୍ତି ।"

ଏତିକି ବେଳେ ବେପାରୀ ଜଣକ କହିଲାଗିଲେ, "ଆଉ ଅଛି ହାତୀ-ଦାନ୍ତର କାରୁକାର୍ଯ୍ୟ, ସୁନାର ହାର, ରାନ୍ଧିବା ଲାଗି ମସଲା, ସୁଗନ୍ଧ ଦ୍ରବ୍ୟ ଓ ପ୍ରସାଧନ ସାମଗ୍ରୀ ।"

ସ୍ତ୍ରୀଲୋକଟି ତା'ର ସ୍ୱାମୀକୁ ଉତ୍ତର ଦେଲା, "ମୁଁ ଏବେ ଆସିବି ଯେ! ଆଉ ଜଣେ ଅତିଥି ଆସି ପହଞ୍ଚିଗଲେଣି । ସେ ଉତ୍ତର ଦେଶର ଜଣେ ପଥରକଟାଳି । ବହୁତ ବାଟ ଚାଲି ଚାଲି ଘର ସେକାଳ ହୋଇଛନ୍ତି ।"

ଗୋଟିଏ କଣରେ ବସିଥିବା ଜଣେ ବୁଢ଼ା ହଠାତ୍ କହିବାକୁ ଆରମ୍ଭ କଲା, "ସମ୍ରାଟ୍ ନିଜେ ହେଲେ ଜଣେ ବୀର ଯୋଦ୍ଧା । ତାଙ୍କ

ଧର୍ମପିତାମହ ମଧ୍ୟ ହୋଇ ଥିଲେ । ତେବେ ବୁଢ଼ା ଲୋକେ କହୁଛନ୍ତି ଯେ, ସେ ଯୁଦ୍ଧ କରିବା ଛାଡ଼ିଦେଇଛନ୍ତି । ଏଥିରେ ଶାନ୍ତି ରହିବ କେମିତି ଭଲା ?"

ନେପାଳୀ ଲୋକ କଣ୍ଠରେ ଉତ୍ତର ଦେଲେ, "ଏଇତ ଶାନ୍ତି ରହିଛି—ବିଦେଶୀ ଶତ୍ରୁଙ୍କ ଆକ୍ରମଣ ନାହିଁ; କାରଣ ସେମାନେ ଆକ୍ରମଣ କରିବାକୁ ଡରୁଛନ୍ତି । ଯୁଦ୍ଧଯାତ୍ରାରେ ଯାଉଥିବା ସୈନ୍ୟଦଳଙ୍କୁ ଆମେ ପୂର୍ବେ ଖାଦ୍ୟପେୟ ଯୋଗାଉଥିଲୁ । ଦେଶରେ ବହୁ ଦସ୍ୟୁ ରାସ୍ତାଘାଟରେ ଲୁଟି କରୁଥିଲେ । ଏବେ ଏସବୁ ଆଉ ହେଉନାହିଁ । ସମ୍ରାଟଙ୍କ କର୍ମଚାରୀମାନେ ନିଜେ ଆଇନ୍ ମାନୁଛନ୍ତି ଓ ଦେଶସାରା ତାହା ରକ୍ଷା ମଧ୍ୟ କରୁଛନ୍ତି ।"

ପାତ୍ରୀଆ ଅଳ୍ପ ଟିକିଏ ହସି କହିଲା, "ମହାରାଜାଙ୍କ ହିସାବର କାଗଜପତ୍ର ଏପରି ଠିକ୍ ଭାବରେ ଲେଖାହେଉଛି ଓ ରଖାଯାଉଛି ଯେ କିଏ ହେଲେ ଆଉ ଜଣକୁ ଶୋଷଣ କରିପାରିବ ନାହିଁ । ସମ୍ରାଟ ତ ତାଙ୍କ କର୍ମଚାରୀଙ୍କୁ ବରାବର କହୁଛନ୍ତି—ଆଇନ ଓ ପ୍ରେମ ବଳରେ ଶାସନ କାର୍ଯ୍ୟ ଚଳାଅ । କଦାପି ବଳଦ୍ୱାରା ଶାସନ କର ନାହିଁ ।"

ବୁଢ଼ା ଲୋକଟି ତେବେ ମୁଣ୍ଡ ଗୁଣ୍ଡୁଗୁଣ୍ଡୁ ହୋଇ କହିଲା, "ବାହାର ଶତ୍ରୁ ହେଉ ଅଥବା ଭିତର ଶତ୍ରୁ ହେଉ, କେତେବେଳେ ଯଦି କିଏ ଆକ୍ରମଣ କରନ୍ତି ତେବେ ସମ୍ରାଟଙ୍କ ବାପ ବୁଢ଼ାବାପଙ୍କ ପ୍ରତିଷ୍ଠିତ ଶାନ୍ତିଶୃଙ୍ଖଳା ଭାଙ୍ଗି ପଡ଼ିବାକୁ କେତେ ବେଳ ?"



ଏଥର ଉତ୍ତର ଦେଲେ ସନ୍ନ୍ୟାସୀ, "ରଜା ଶାସନ କରେ ଧର୍ମ ବା ଆଇନ୍ ବଳରେ— ପ୍ରଜାଙ୍କୁ ଉତ୍ସାହିତ କରି ନୁହେଁ ।"

ପାଣ୍ଡିଆ କହିଲେ, "ଦେଶର ସୈନ୍ୟସଂଖ୍ୟା କମ୍ ହୋଇନାହିଁ । ସୀମାନ୍ତ ସ୍ଥଳ ଜଳ-ରୂପେ ପହରା ଦିଆଯାଉଛି । ଦେଶରେ ଆଇନ ଜାରି ରହିଛି ।"

ସନ୍ନ୍ୟାସୀ କହିଲେ, "ଆମର ମହାନ୍ ସମ୍ରାଟ ଘୋଷଣା କରିଛନ୍ତି ଯେ ଯୁଦ୍ଧଭେରୀର ବାଜଣା ବଦଳରେ ଲୋକଙ୍କୁ ନୀତି ନିୟମ ଶିକ୍ଷା ଦିଆଯିବ । ମଣିଷର ମନକୁ ଜୟ କରି-ପାରିଲେ ଯାଇ ପ୍ରକୃତ ବିଜୟ ଲାଭ ହୁଏ ।"

ବେପାରି କହିଲେ, "ଏହି କାରଣରୁ ହିଁ ସମ୍ରାଟଙ୍କ ଆଦେଶରେ ତାଙ୍କ ନୀତି ଓ ନିୟମ-ଗୁଡ଼ିକ ପାହାଡ଼ କାନ୍ଥରେ ଓ ସ୍ତମ୍ଭମାନଙ୍କରେ ଖୋଳା ହୋଇଛି । ଏହାଦ୍ୱାରା ଲୋକେ ତାଙ୍କ କର୍ତ୍ତବ୍ୟ ଜାଣି ପାରିବେ । ନିୟମଗୁଡ଼ିକ ମଧ୍ୟ ଦୀର୍ଘସ୍ଥାୟୀ ହେବ । ଦେଶର ମନ୍ଦିରରେ ସମ୍ରାଟଙ୍କ ବାଣୀ ଖୋଳା ହୋଇଥିବାର ଆମେ ଦେଖିଛୁ ।"

ସନ୍ନ୍ୟାସୀ କହିଲେ, "ଏ ସବୁ ବାଣୀଦ୍ୱାରା ସମ୍ରାଟ ସମସ୍ତଙ୍କୁ ଶିକ୍ଷା ଦେଉଛନ୍ତି । ଶାସନକର୍ତ୍ତାଙ୍କଠାରୁ ଆରମ୍ଭ କରି ରାଜକର୍ମଚାରୀ ଓ ପ୍ରଜାମାନଙ୍କୁ ମଧ୍ୟ ନିଜ ନିଜ ଧର୍ମ ବା କର୍ତ୍ତବ୍ୟ ପାଳନ କରିବାକୁ ସେ କହିଛନ୍ତି ।"



ସନ୍ନ୍ୟାସୀଙ୍କ ଅନାଇ ବେପାରୀଜଣକ କହିଲେ, "ସମ୍ରାଟ ତ ହେଲେ ପୀତବସନଧାରୀ ସାଧୁଗୋଷ୍ଠୀର ଶିଷ୍ୟ । ଆପଣ ସେ ଗୋଷ୍ଠୀର ସଭ୍ୟ ନୁହନ୍ତି । ତେବେ ଆପଣ କାହିଁକି ତାଙ୍କର ପ୍ରଶଂସା କରୁଛନ୍ତି ?"

ପାଣ୍ଡିଆ ଏହାର ଜବାବ ଦେଲେ । ସେ କହିଲେ, "ସମ୍ରାଟ ସବୁ ଧର୍ମବିଶ୍ୱାସୀଙ୍କୁ ସମ୍ମାନ କରନ୍ତି । ଗୌଡ଼ ଦେଶର ମହାପଣ୍ଡିତ ଉପଗୁପ୍ତଙ୍କ ନିକଟରୁ ଦୀକ୍ଷା ଗ୍ରହଣ କରିବା ଦିନରୁ ସେ ମହାଜ୍ଞାନୀ ଦୟାଳୁ ବୁଦ୍ଧଙ୍କ ଶିଷ୍ୟତ୍ୱ ନେଇଛନ୍ତି । କିନ୍ତୁ ସବୁ ଧର୍ମମତରେ ଯେ ସତ୍ ନୀତି ଅଛି, ତାହାହିଁ ତାଙ୍କର ବିଶ୍ୱାସ । ମଣିଷ ଧର୍ମଦ୍ୱାରା ମିଳିତ ହେଉ—ତାହାର ବଳରେ ସେମାନେ ଅଲଗା ନରହନ୍ତୁ—ଏହାହିଁ ତାଙ୍କର କାମନା ।"

ସନ୍ନ୍ୟାସୀ କହିଲେ—"ଗୋଟିଏ ସ୍ତମ୍ଭ ଉପରେ ସମ୍ରାଟଙ୍କ ଉପଦେଶ ବାଣୀ ଖୋଳା-ହୋଇଛି ଯେ ନିଜ ନିଜ ଧର୍ମମତକୁ ପ୍ରଶଂସା କରିବାକୁ ଯାଇ ଅନ୍ୟର ଧର୍ମମତକୁ ନିନ୍ଦା କର ନାହିଁ । ସେ ସଦାବେଳେ ନମ୍ର ବଚନ କହିବାକୁ ଓ ଭଲ କାର୍ଯ୍ୟ କରିବାକୁ ଉତ୍ସାହିତ କରିଛନ୍ତି ।"

ଏଥର ଜଗୁଆଳ କହିପକାଇଲା, "ଅନ୍ୟକୁ ଯାହା ଉପଦେଶ ଦିଅନ୍ତି ସମ୍ରାଟ ନିଜେ ତାହାହିଁ ପାଳନ କରନ୍ତି । ସେ ତାଙ୍କ କଅଁଳ କଥା ଓ ଭଲ କାମ ଲାଗି ସମସ୍ତଙ୍କର ପ୍ରିୟ ଓ ସମ୍ମାନାସ୍ପଦ ହୋଇଛନ୍ତି । ତାଙ୍କ ବାଣୀଗୁଡ଼ିକ ଖୋଳା ହୋଇଛି ପଥରମାନଙ୍କରେ । ଆଉ ତାଙ୍କ ସୁକାର୍ଯ୍ୟ ତ ଆମେ ସବୁଆଡ଼େ ଦେଖିପାରୁଛୁ । ବ୍ୟବସାୟୀ ଓ ଯାତ୍ରୀଙ୍କ ଲାଗି ତିଆରି ଅସୁମାରି ସଡ଼କ । କୃଷୀଙ୍କ ଲାଗି ହୋଇଛି ଜଳସେଚନର ବ୍ୟବସ୍ଥା । ମଣିଷ ଓ ପଶୁ ପକ୍ଷୀଙ୍କ ଲାଗି ସେ ତିଆରି କରାଇଛନ୍ତି କେତେ ଚିକିତ୍ସାଳୟ । ପ୍ରତି ଆଠ କୋଶ ଛାଡ଼ି ଛାଡ଼ି ସେ କରିଛନ୍ତି ବିଶ୍ରାମଗୃହ, କୂପ ଓ ଭଣ୍ଡାରଘର । ଯାତ୍ରୀମାନେ ଛାୟାଶୀତଳ ପଥରେ ସୁଖରେ ଯାଇପାରିବେ ବୋଲି ସେ ପଥପାର୍ଶ୍ୱରେ ବର ଓ ତେନ୍ତୁଳିଗଛ ଲଗାଇଛନ୍ତି । ମଣିଷଠାରୁ ଆରମ୍ଭ କରି ପଶୁ ପକ୍ଷୀ ସମସ୍ତଙ୍କ ଆଶ୍ରୟ ଓ ଖାଦ୍ୟ ଲାଗି ସେ ପ୍ରତି ଗାଁ ଓ ସହର ପାଖରେ ଆମ୍ବ ବଗିଚା କରିଛନ୍ତି ।"

ଠିକ୍ ଏତିକିବେଳେ ଜଗୁଆଳର ଭଉଣୀ ଜଣେ ନୂଆ ଅତିଥିଙ୍କୁ ଧରି ପହଞ୍ଚିଲା । ଏ ଲୋକଟି ବସ୍ତ୍ରବ୍ୟାପାରୀ, ତା'ର ମୁହଁ ବଡ଼ ବେଶ ବଡ଼ । ତା'ର ବେଶଭୂଷାରୁ ଜଣାପଡ଼ୁଥାଏ ସେ ବେଶ୍ ମେଳାପୀ ଓ ହସଖୁସିଆ । ଜଗୁଆଳର ଭଉଣୀ ଲୋକଟିକୁ ଡାକି ତା' ମଙ୍ଗିଣୀ ପାଖେ ବସିପଡ଼ିଲା । ସ୍ୱାମୀକୁ ଅନାଇ ସେ କହିଲା, "ବଡ଼ ଦୂରରୁ ପଥରକୁ ଦେଖିବାକୁ ଇଚ୍ଛା କରୁଛି । ସେ ଏବେ ଅତିଥି ହେ ।"

ନୂଆ ଲୋକଟି କହିଲା, "ମୋର ଜାଣିବାରେ ମୁଁ କେବେ ଶୁଣିନାହିଁ । ତେଣୁ ଏ ଝିଅଟି ତାଙ୍କ ଖିଆପିଆ ଖବର ବୁଝି ଥିବାରୁ ମୁଁ ଏପଟକୁ ବୁଲିଆସିଲି ।"

ଏ କଥା ଶୁଣି ଜଗୁଆଳ କହିଲା, "ମୋ ଝିଅ ଜୀବଜନ୍ତୁଙ୍କୁ ଭଲପାଏ ।"

ବେପାରୀ ଟିକିଏ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ହେଇ କୁକୁରଛୁଆ ନେଇ ବସିଥିବା ଝିଅଟି ତୁମର ଝିଅ ?"

ଜଗୁଆଳ ଦୃଢ଼ କଣ୍ଠରେ କହିଲା, "ହଁ ଅଜ୍ଞା, ସେ ମୋ ଝିଅ ।"

ଅତିଥିମାନେ ଏ କଥା ଶୁଣି ଟିକିଏ ଆଶ୍ଚର୍ଯ୍ୟ ହେଲେ । ସେହି ଟାଙ୍ଗୀ ଝିଅଟିକୁ ଦେଖିଲେ ମନେହେଉଥିଲା—ସେ ଅତି ଜଙ୍ଗଲି ଜାତିର ।

କଥାଟାକୁ ବୁଲାଇ ନୂଆ ଅତିଥି ଜଣେ କହିଲା—"ମୋର ପିଲାପିଲାଙ୍କୁ ମୁଁ ଅନେକ ଦିନୁ ଦେଖିନାହିଁ । ଉତ୍ତର ଅଞ୍ଚଳରୁ ମୋ ଘରକୁ ଫେରିଗଲେ ତୁମର ଝିଅ ବୟସର ଝିଅଟି ମୋତେ ଆଉ ଚିହ୍ନି ବି ପାରିବ ନାହିଁ ।"



ନଗୁଆଉଁର ଦୃଷ୍ଟି ନିଜ ପ୍ରଭୁଙ୍କ କଥାବାର୍ତ୍ତାରେ ମିଶୁ ନ ଥିଲା । ତେବେ ପୂଜା ସେ ଧୀରେ ଧୀରେ କହିଲା, "ମୁଁ ସ୍ୱଦେଶୀ, ଆପଣ ବିଦେଶୀ । ଆମ ଭାଷା ତ ଆପଣ ପରିଷ୍କାର କହୁଛନ୍ତି । ଆପଣଙ୍କ ଘର କେଉଁଠାରେ ?"

ସେ ଲୋକଟି କହିଲା, "ମୁଁ ଜଣେ ଇରାନୀ । ମୁଁ ତକ୍ଷଶିଳାର ଜଣେ ପଥରକଟାଳି । ବହୁ ବର୍ଷ ତଳେ ତୁମର ମହାନ୍ ସମ୍ରାଟ ତକ୍ଷଶିଳା ଯାଇଥିଲେ । ସେତିକବେଳେ ସେଠାର ଇରାନୀ ପଥରକଟାଳି ବସ୍ତିଟି ମଧ୍ୟ ସେ ଦେଖିଥିଲେ । ପରେ ପଥର ଦାଣ୍ଡି ସେଥିରେ ଖୋଦେଇ କାମ କରିବାଲାଗି ସେ ଆମ ଭିତରୁ କେତେ ଜଣଙ୍କୁ ଡକାଇପଠାଇଥିଲେ ।"

ବେପାରୀ ଜଣକ କହିଲେ, "ଅମ ସମ୍ରାଟଙ୍କ ଶିଳାଲିପି ଅନୁଶାସନ ବିଷୟରେ ହିଁ ଆମର ଆଲୋଚନା ହେଉଥିଲା । ଏହିସବୁ ଅନୁଶାସନଦ୍ୱାରା ସେ ତାଙ୍କ ପ୍ରଜାକୁଳଙ୍କୁ ନୀତି କଥା ଶିଖାଉଛନ୍ତି । ଏ ସବୁ ଧର୍ମସ୍ତମ୍ଭ କିମିତି ତିଆରି ହୁଏ ଓ ତହିଁରେ କିପରି ଖୋଦେଇ କାମ ହୁଏ, ତାହା ତ ଆପଣ ଆମକୁ କହିପାରିବେ । ଅଶୋକଙ୍କ ପୂର୍ବରୁ ଆଉ କୌଣସି ରାଜା ପଥର ଅନୁଶାସନଦ୍ୱାରା ଲୋକଙ୍କୁ ନିଜ ମନକଥା କହି ନ ଥିଲେ ।"

ଇରାନୀ ଲୋକଟି କହିଲା, "ମୋ ଦେଶରେ ପଥରର ଲେଖା କିଛି ଅଜଣା କଥା ନୁହେଁ । ଆମର ମହାନ୍ ରାଜା ଡାରିୟସ୍ ଗୋଟିଏ ଉଚ୍ଚ ପାହାଡ଼ରେ ତାଙ୍କ ଅନୁଶାସନ ରଖିଯାଇଛନ୍ତି ।"

ସନ୍ନ୍ୟାସୀ ପଚାରିଲେ, "ସେଥିରେ କ'ଣ ଲେଖାଇଛନ୍ତି ସେ ?"

ପଥରକଟାଳି କହିଲା, "ଏହି ଅନୁଶାସନରେ ସେ ନିଜର ଦେଶ ବିଜୟ ଓ ଗୌରବ କାହାଣୀ ଲେଖିଛନ୍ତି ।"

ସନ୍ନ୍ୟାସୀ କହିଲେ—"ଆମର ମହାନ୍ ସମ୍ରାଟଙ୍କ ଅନୁଶାସନଗୁଡ଼ିକରେ କିନ୍ତୁ ତାଙ୍କ ଗୌରବ ଗାଥା ଲେଖାହୋଇନାହିଁ । ସେଥିରେ ତାଙ୍କ ପ୍ରଜାକୁଳଙ୍କ ମଙ୍ଗଳ କଥା ଲିଖିତ ହୋଇଛି । ସେ ତାଙ୍କ ପ୍ରଜାଙ୍କୁ ସୁଖୀ ହେବାକୁ ହିଁ ବାଟ ବତାଇଛନ୍ତି । ସେ କହିଛନ୍ତି—ଧର୍ମ ଆଚରିଲେ ସୁଖ ମିଳେ । ଦାନ, ସତ୍ୟବାଦିତା, ଜନ୍ମଲୋକଙ୍କ ପ୍ରତି ସମ୍ମାନ, ବ୍ରାହ୍ମଣ ଓ ଭିକ୍ଷୁଙ୍କ ପ୍ରତି ଓ ଦୁଃଖୀ ଦରିଦ୍ରଙ୍କ ପ୍ରତି ସୁବ୍ୟବହାର ଆଦି ଦ୍ୱାରାହିଁ ଧର୍ମ ରକ୍ଷା ହୋଇପାରେ ।"

ପାତ୍ରିଆ କହିଲେ, "ଜଣେ ଭଲ ସେବିକା ତା' ଦାୟିତ୍ୱରେ ଥିବା ଶିଶୁଙ୍କୁ ଯେପରି ସ୍ନେହରେ ପାଳିଥାଏ, ଠିକ୍ ସେହିପରି ପ୍ରଜାଙ୍କୁ ସୁଖସମୃଦ୍ଧିରେ ରଖିବାକୁ ସମ୍ରାଟ୍ ତାଙ୍କ ରାଜକର୍ମଚାରୀଙ୍କୁ କହିଛନ୍ତି । ଏପରି କି, ଯେଉଁସବୁ ଜଙ୍ଗଲୀ ଜାତିର ଲୋକେ ସଭ୍ୟଲୋକଙ୍କ ନିକଟରୁ ବହୁ ଦୂରରେ ରହନ୍ତି ବୋଲି ତାଙ୍କୁ ସମସ୍ତେ ହୀନଦୃଷ୍ଟିରେ ଦେଖନ୍ତି, ତାଙ୍କ ପ୍ରତି ବି ସମ୍ରାଟଙ୍କର ସମାନ କରୁଣା ଅଛି ।"

ଏ କଥା ଶୁଣି ଯୁବତୀ ନାରୀଟିର ଆଖି ଛଳଛଳ ହୋଇଆସିଲା । ତା'ର ଶାଶୁ ତାକୁ ସ୍ନେହରେ ପାଖକୁ ଟାଣିନେଲା । ତା'ପରେ ସେଇ ଅଧବୁଢ଼ୀ କହିଲା, "ଅଜ୍ଞା, ଲୋକେ



ଏସବୁ କଥା ବୁଝିବୁ କିମିତି ? ଆମେ ତ ସଂସ୍କୃତ ପାଠ ପଢ଼ିନୁ । ଜଙ୍ଗଲୀ ଲୋକେ ତ ଆହୁରି ମୂର୍ଖ ।"

ନେପାଳୀ କହିଲେ, "ସମ୍ରାଟଙ୍କ ଅନୁଶାସନ-ଗୁଡ଼ିକ ସାଧାରଣ ଲୋକଙ୍କ ଭାଷାରେ ଲେଖା; ପଣ୍ଡିତଙ୍କ ଭାଷାରେ ନୁହେଁ ।"

ପାଣ୍ଡିଆ କଥାଟାକୁ ବୁଝାଇ କହିଲେ, "ଅନେକ ସମୟରେ ରାଜକର୍ମଚାରୀମାନେ ସେହି ଅଞ୍ଚଳର ଲୋକଙ୍କୁ ଏକାଠି ରୁଣ୍ଡେଇ ତାଙ୍କୁ ଏସବୁ ଅନୁଶାସନ ପଢ଼ି ବୁଝାଇ ଦଅନ୍ତି । କିନ୍ତୁ ଆମେ ସବୁ ଆମର ଏହି ବନ୍ଧୁଙ୍କଠାରୁ ଶୁଣିବା କିମିତି ଏସବୁ ବଡ଼ ସ୍ତମ୍ଭ ତିଆରି ହୁଏ, ପଥର କିମିତି କଟାହୁଏ ଯନ୍ଧ ଲେଖାହୁଏ ।"

ପଥରକଟାଳି କହିବାକୁ ଆରମ୍ଭ କଲେ— "ଦୁଇଟି ସ୍ଥାନରୁ ପଥର ଆସେ । ମଥୁରାରୁ ଆସେ ଧଳା ଓ ନାଲି ରଙ୍ଗର ଛିଟାଭଲ ଚାଲୁଆ ପଥର । ବାରାଣସୀ ନିକଟରେ ଚୂନାର୍‌ରୁ ଆସେ ପାଉଁଶିଆ ରଙ୍ଗର କଠିଣ ପଥର । ସ୍ତମ୍ଭର ମୂଳ ଅଂଶ ଲାଗି ଖଣ୍ଡିଏ ବିରାଟ ପଥର କଟାହୁଏ । ତା'ପରେ ତାକୁ ହଣାମରା ଓ ପାଲିସ୍ କରିବାକୁ ପଡ଼େ । ଭାରତୀୟ ଓ ଇରାନୀ—ଦୁଇଦେଶର ବହୁତ ପଥରକଟାଳି ଏ କାମ କରନ୍ତି । ଏ କାମ ସରିଲେ, ଏ ସ୍ତମ୍ଭଗୁଡ଼ିକରେ ପାଟଳିପୁତ୍ର ରାଜନଅରର ସ୍ତମ୍ଭପରି ନକ୍ସାକାମ କରି ତାକୁ ଅତି ସୁନ୍ଦର ପାଲିସ୍ କରାଯାଏ । ଧାତୁ ସ୍ତମ୍ଭ ପରି ଏଥିରେ ଯେଉଁ ପାଲିସ୍ ରହିଛି ତାହାର ଲାଗି ଆମର ସବୁ କାରିଗର ବୁଦ୍ଧି ଖର୍ଚ୍ଚ ହୋଇଛି । ସ୍ତମ୍ଭ ଉପରର ଶୀର୍ଷଟି ଖୋଳିବାରେ ମଧ୍ୟ ବହୁତ କାରିଗର ବୁଦ୍ଧି ଖର୍ଚ୍ଚ ହୋଇଛି ।"

ନେପାଳୀ ଜଣକ ପଚାରିଲେ, "ଆମର ଭାରତୀୟ କାରିଗର କ'ଣ ଏମିତି ପାଲିସ୍ କରି-ପାରନ୍ତି ନାହିଁ ?"

ପାଣ୍ଡିଆ କହିଲେ, "ଭାରତୀୟ କାରିଗରଙ୍କର ବିଶେଷ ଗୁଣ ହିଁ ହେଲା ଏହି ପାଲିସ୍ କାମ। ଜଟିଳ ଆକୃତିର ସ୍ତମ୍ଭଶୀର୍ଷଗୁଡ଼ିକ ଗଢ଼ିବା ମଧ୍ୟ ତାଙ୍କର ବିଶେଷତ୍ୱ। ଦେଶର ଗୋଟିଏ ସୀମାରେ ଗୀରନାର ଅଞ୍ଚଳର ସୁଦର୍ଶନ ହ୍ରଦଠାରେ ଯେଉଁ ବିରାଟ ବନ୍ଧ ଗଢ଼ାହୋଇଛି, ସେଭଳି ଅତି ଦରକାରୀ କାମଗୁଡ଼ିକ ଆମ ଭାରତୀୟ କାରିଗରମାନେ ହିଁ ଗଢ଼ିଛନ୍ତି।"

ପଥରକଟାଳି ପୁଣି କହିଲା, "ସ୍ତମ୍ଭଶୀର୍ଷଗୁଡ଼ିକ ଗଢ଼ିବା ଲାଗି ଗୋଟିଏ ବିରାଟ ପଥର ଲୋଡ଼ାହୁଏ। ଏହା ଗଢ଼ିବାରେ ଆମ ଭାରତୀୟ କାରିଗରମାନେ ଗୋଟିଏ ନୂଆ ଶୈଳୀ ଆରମ୍ଭ କରିଛନ୍ତି। ସେମାନେ ନୂଆ ନୂଆ ଉଦ୍ଭାବନରେ ବିଚକ୍ଷଣ ଦକ୍ଷ। ଶୀର୍ଷଭାଗର ମୂଳଟିକୁ ପ୍ରାୟ ସବୁଠି ଗୋଟିଏ ପାତ୍ରର ଆକାର ଦିଆଯାଏ। ସେଥିରେ ଗୁଡ଼ିଏ ଫୁଲପାଖୁଡ଼ା ଗଢ଼ିଦେଲା ପରେ ତାହା ଭୂମର ବଚଜ ପଦ୍ମଫୁଲ ପରି ଆକୃତି ଲାଭକରେ। ସବା ଶେଷରେ ଗଢ଼ାହୁଏ ଉପରର ବଡ଼ ବଡ଼ ଜନ୍ତୁମୂର୍ତ୍ତିଗୁଡ଼ିକ। ଏହାକୁ ଗଢ଼ିବାରେ ଆମେ ଆମର ସମସ୍ତ କାରିଗରି ବୁଦ୍ଧି ଖଟାଉ।"

ଠିକ୍ ସେତିକିବେଳେ ଭିତରକୁ ଆସିଥିବା ଝିଅଟି ଅତି ଆଗ୍ରହରେ ପଚାରିଲା, "କି ଜନ୍ତୁ?" ସେ ପଥରକଟାଳି ପାଖକୁ ଲାଗି ବସିପଡ଼ିଲା।

ସେ ହସି ହସି କହିଲା, "ସିଂହ ଲୋ ଝିଅ, ସିଂହ। ଆମର ଉତ୍ତର ଦେଶରେ ସିଂହ ହିଁ ହେଲା ଜଙ୍ଗଲର ରାଜା। ଶୀର୍ଷଭାଗରେ ହାତୀ ଆଉ ଘୋଡ଼ା ମଧ୍ୟ ରହି ବଢ଼ିଆ ଦିଶନ୍ତି। ସର୍ବଶ୍ରେଷ୍ଠ ସ୍ତମ୍ଭ ହେଲା ସାରନାଥର ସ୍ତମ୍ଭ। ସେଇ ସ୍ତମ୍ଭଶୀର୍ଷଟିରେ ଗଢ଼ାହୋଇଛି ଚାରୋଟି ସିଂହ। ସେମାନେ ପୃଥିବୀର ଚତୁର୍ଦ୍ଦିଗକୁ ଚାହିଁରହିଛନ୍ତି।"

ସେ କହିଚାଲିଲା, "ସ୍ତମ୍ଭଟି ଉଠିବା ସ୍ଥାନରେ, ସ୍ତମ୍ଭ ଓ ସ୍ତମ୍ଭଶୀର୍ଷ ଦୁଇଟିଯାକ ପହଞ୍ଚିଗଲା ପରେ ଆମର କାମ ହେଲା ସ୍ତମ୍ଭଟିକୁ ଭୂମିରେ ମଜବୁତ୍ କରି ପୋତିବା। ସେ କାମ ସରିଲେ ତା ଉପରକୁ ସ୍ତମ୍ଭଶୀର୍ଷଟିକୁ ଟେକି ନେଇ ବସାଇବାକୁ ପଡ଼େ।"





ଜଗୁଆଲ ପଚାରିଲେ, "ସ୍ତମ୍ଭଶୀର୍ଷଟିକୁ ଯୋଡ଼ାଏ କେମିତି ?"

ଇରାନୀ କାରିଗର କହିଲେ—"ସ୍ତମ୍ଭ ଉପରେ ସ୍ତମ୍ଭଶୀର୍ଷଟିକୁ ଆଗ ଭଲକରି ବସାଯାଏ । ତା'ପରେ ଗୋଟିଏ ବଡ଼ ତମ୍ବାର ଖିଲ୍ ମାରି ତାକୁ ମଜ୍‌ଭୁତ୍ କରାଯାଏ ।"

ସନ୍ନ୍ୟାସୀ କହିଲେ, "ଭାରତୀୟ କାରିଗର ଯେଉଁ ଜନ୍ତୁର ମୂର୍ତ୍ତି ଖୋଳିବାକୁ ଭଲ ପାଆନ୍ତି, ତାହା ହେଲା ଛୁଞ୍ଚିଆ ହାତୀ । ଧଉଳି ପାହାଡ଼ରେ ମୁଁ ଗୋଟିଏ ପଥରର ହାତୀ ଦେଖିଛି । ତାହା ଠିକ୍ ଜଙ୍ଗଲର ହାତୀ ପରି ଜୀବନ୍ତ । ଏହି ପଥର ହାତୀଟି ନିକଟରେ ଥିବା ସମ୍ରାଟଙ୍କ ଅନୁଶାସନ ଆଡ଼କୁ ଲୋକଙ୍କ ଦୃଷ୍ଟି ଆକର୍ଷଣ କରିବାଲାଗି ସେଠି ଠିଆ ହୋଇଛି ।

ଗ୍ରୀକଟି ପଚାରିଲା, "ଅଚ୍ଛା, ସମ୍ରାଟଙ୍କ ଅନୁଶାସନଗୁଡ଼ିକ ତୁମ ପାଖକୁ ଆସେ କେମିତି ?

"ସେଗୁଡ଼ିକ ପୁଣି ତୁମ ଚଆଶ ସୁନ୍ଦର ସ୍ତମ୍ଭଗୁଡ଼ିକରେ ଖୋଳାହୁଏ କେମିତି ?"

ପାଣ୍ଡିଆ କହିଲେ, "ସମ୍ରାଟଙ୍କର ସବୁ ଅନୁଶାସନ ଆଗ ପାଟଳିପୁତ୍ରରେ ସରୁ ସୂତା ଲୁଗା ଉପରେ ଲେଖାଯାଏ । ତାପରେ ସେଠାରୁ ସେଗୁଡ଼ିକ ପଠାଯାଏ ।"

ପଥରକଟାଳି କହିଚାଲିଲେ, "ଏହା ପାଇଲା ପରେ ଆମେ ପଥରକାନ୍ଥି ବା ସ୍ତମ୍ଭ ଉପରେ ତାହା ନିହାଣରେ ଖୋଳି ଖୋଳି ଲେଖୁଁ । ଏ କାମରେ ବିଶେଷ ଧୈର୍ଯ୍ୟ ଓ ଶ୍ରମ ଲୋଡ଼ାହୁଏ; କାରଣ ଏସବୁ ପଥର ଓ ଲେଖା ଉଭୟ ହିଁ ବହୁ ଯୁଗ ସ୍ଥାୟୀ ହେବା ଦରକାର । ବିଚରା ପଥରକଟାଳି ନିଜେ ବଡ଼େ କଷ୍ଟରେ ଅକ୍ଷର ଖୋଳୁଥିଲେ ସୁଦ୍ଧା ନିଜେ ତାହା ପଢ଼ିପାରେ ନାହିଁ ।"

"ମୁଁ ଜାଣେ ଯେ ତୁମ ଦେଶର ଅକ୍ଷରଗୁଡ଼ିକ ବାମ ଦିଗରୁ ଡାହାଣକୁ ଲେଖାହୁଏ । ଆମ ଦେଶରେ ଆମେ



ତାହାଙ୍କୁ ବାମକୁ ଲେଖ । ତୁମେ ଜଣେ ପଣ୍ଡିତ । ଜ୍ଞାନ ଆହରଣ ଲାଗି ବହୁତ ଦୂରକୁ ଯାଉଛ । ତେଣୁ ଏ ଅନୁଶାସନର ଭାଷା ତୁମେ ଭଲକରି ଜାଣିବା ଦରକାର ।"

ବେପାରୀ କହିଲେ, "ଆମ ବନ୍ଧୁ ଯେଉଁ ଭାଷା ପଢ଼ିବାକୁ ଯାଉଛନ୍ତି ତାହା କେବଳ ସଂସ୍କୃତ—ବେଦର ଭାଷା । ତାହା ପଣ୍ଡିତମାନେ ବ୍ୟବହାର କରନ୍ତି । କିନ୍ତୁ ଅନୁଶାସନଗୁଡ଼ିକ ଜନସାଧାରଣଙ୍କ ଭାଷା, ପ୍ରାକୃତରେ ଲିଖିତ । ଆମର ଦୟାଳୁ ସମ୍ରାଟଙ୍କ ଇଚ୍ଛା ଥିଲା ଯେ ତାଙ୍କର ସମଗ୍ର ପ୍ରଜାକୁଳ ତାହା ବୁଝିପାରିବେ ।"

ଛୁଏଟି କହିଲା, "ମୁଁ ଏହି ଅନୁଶାସନର ଭାଷା, ଅର୍ଥାତ୍ ଜନସାଧାରଣଙ୍କ ଭାଷା, ଜାଣିଛି । ଏଥିରେ ଲିଖିତ ବ୍ରାହ୍ମୀଅକ୍ଷର ପଣ୍ଡିତ ଲୋକ ଓ ସାଧାରଣ ଲୋକ ସମସ୍ତଙ୍କୁ ଜଣା ।"

ପାଣ୍ଡିଆ କହିଲେ, "ଉତ୍ତର-ପଶ୍ଚିମ ସୀମାନ୍ତରେ କେତେକ ଅନୁଶାସନ ଆଉ ଏକ ଜାତିର ଅକ୍ଷରରେ ଲେଖା ହୋଇଛି ବୋଲି ମୁଁ ଶୁଣିଛି । ସେ ଦେଶର ଲୋକେ ଏହି ଡାହାଣରୁ ବାମକୁ ଲେଖାଯାଉଥିବା 'ଖାରୋଷ୍ଠି' ଅକ୍ଷର ବ୍ୟବହାର କରୁଥିଲେ ।"

ହିଏ ପେଇଟି ଆଗ୍ରହରେ ପଚାରିଲା, "ତୁମ ସମସ୍ତଙ୍କୁ ଲେଖି ପଢ଼ି ଆସେ ?"

ପାଣ୍ଡିଆ କହିଲେ, "ବେପାରୀମାନେ ସାଧାରଣତଃ ଲେଖିଜାଣନ୍ତି । ରାଜକର୍ମଚାରୀଙ୍କୁ ମଧ୍ୟ ହିସାବ ରଖିବାକୁ ପଡ଼େ; ପାଞ୍ଜି ଲେଖିବାକୁ ପଡ଼େ । ପଣ୍ଡିତମାନେ ବେଦ ଓ ଶାସ୍ତ୍ର ପଢ଼ି ମୁଖସ୍ଥ କରନ୍ତି । ସଂସାରର ସବୁ କାମ ଲାଗି ଲେଖାପଢ଼ା ଦରକାର ।"

ହିଏଟି ପଚାରିଲା, "ତୁମେ କେଉଁଥିରେ ଲେଖ ? ଆହା, ମୁଁ ଲେଖିପାରନ୍ତି କି !"

ଛୁଏଟି ଟିକିଏ ହସିଲା । ତା' ପାଖରେ ଥିବା ଗୋଟିଏ କନା ବୁଜୁଲା ଖୋଲି ସେ ଭିତରେ ଥିବା ଭୂର୍ଜ ଓ ତାଳପତ୍ର ଖଣ୍ଡ, ଲେଖନୀ ଓ ତୂଳିକା ଆଦି ଦେଖାଇଲା ।

ପାଣ୍ଡିଆ କହିଲା, "ଆପଣ୍ଙ୍କା କାଲି ମୋର ବହୁତ କାମ ଅଛି । ଆମର ମହାନ୍ ସମ୍ରାଟ ତ ସୁନ୍ଦର ଉଦାହରଣ ସବୁ ଦେଖାଇଛନ୍ତି । ତାଙ୍କର କଡ଼ା ଆଦେଶ ହେଲା, ସଦାବେଳେ ପ୍ରଜାକୁଳଙ୍କ ଖବର ତାଙ୍କ ପାଖକୁ ପଠାଇବାକୁ ହେବ । ସେ ଭଳେ ଖାଉଥାନ୍ତୁ ବା ଶୋଇଥାନ୍ତୁ ଅଥବା ପ୍ରାସାଦର ବଗିଚ୍ଚରେ ବୁଲୁଥାନ୍ତୁ—ତେବେ ସୁଦ୍ଧା ତାଙ୍କ ପାଖରେ ରାଜ୍ୟ ଖବର ପହଞ୍ଚାଇବାକୁ ହେବ ।"

ସନ୍ନ୍ୟାସୀ କହିଲେ, "ରାଜ୍ୟର ମଙ୍ଗଳ ଲାଗି ଖଟିବାହିଁ ହେଲା ସମ୍ରାଟଙ୍କର ଏକମାତ୍ର ଆନନ୍ଦ । ରାଜା ମୃଗୟା ଓ ଜନ୍ତୁ ଲଢ଼େଇ ଖେଳ ବନ୍ଦ କରିଦେଇଛନ୍ତି । ମଣିଷ ଅଥବା ପଶୁ କାହାର ବିନା କାରଣରେ ରକ୍ତପାତ ନହେଉ, ଏହାହିଁ ତାଙ୍କର ଇଚ୍ଛା ।"





ଇଗ୍ନା ଲୋକଟି ବଡ଼ପାଟିରେ କହିଲା, "ଓଃ ! ଜନ୍ତୁ ଲଢ଼େଇ ! ମୁଁ ମାନୁଛି ସେ ସେସବୁ ନଦେଖି ମୁଁ ଦୁଃଖିତ । ମୋ ପିଲାଦିନେ ତକ୍ଷଶିଳାରେ ମୁଁ ସେ ଲଢ଼େଇ ଦେଖିଛି । ଓଃ, କି ବଢ଼ିଆ ଲଢ଼େଇ ହେଉଥିଲା ! ଷଣ୍ଢ ସହିତ ଷଣ୍ଢର ଲଢ଼େଇ; ହାତୀ ସହିତ ହାତୀର । କିନ୍ତୁ ସେଇ ଅଦ୍ଭୁତ ଏକଶିଙ୍ଗିଆ ଜନ୍ତୁଙ୍କ ଲଢ଼େଇକୁ ମୁଁ ସବୁଠାରୁ ଅଧିକ ଭଲପାଉଥିଲି; ବଡ଼ ଗୋଳିଆ ମୁଣ୍ଡରେ ଗୋଟିଏ ମାତ୍ର ଶିଙ୍ଗ ।"

ସାନଝିଅଟି ଆନନ୍ଦରେ ପାଟିକରି ଉଠିଲା, "ଆରେ, ଏକଶିଙ୍ଗା ଜନ୍ତୁ କମିତକା ? ମୁଁ କେଭେ ଦେଖିନି; କିନ୍ତୁ ଏବେ ତ ଆଉ ଜନ୍ତୁ-ଲଢ଼େଇ ହେବନାହିଁ । ମୁଁ ଆଉ ଏ ଜନ୍ତୁ ଦେଖିପାରିବ ନାହିଁ ।"



ପାଞ୍ଜିଆ ସାଥିରେ ବୁଲୁଥିବା ଆଉ ଗୋଟିଏ କଳା ରଙ୍ଗର ଲୋକ ଏଥର କହିଲା—"ଆଲେଝିଅ, ମୁଁ ଗଣ୍ଡାର ଦେଖିଛି । ତୋତେ ଗଣ୍ଡାର ଖବର କହିପାରିବ । ସୈନ୍ୟବାହିନୀର ମାଲବୁହା ଆଉ ହାତୀବାହିନୀ ଲାଗି ହାତୀ ବହୁତ ଲୋଡ଼ା । ଉତ୍ତର ଅଞ୍ଚଳର ଜଙ୍ଗଲରେ ହାତୀ ଧରିବା କାମରେ ମୁଁ ରହିଛି । ସେହି ଉତ୍ତରର ଜଙ୍ଗଲରେ ଏହି ଏକଶିଙ୍ଗା ଅସୁରିଆ ଜୀବଟି ମଧ୍ୟ ଥାଏ । ଗଣ୍ଡାରର ଚମଡ଼ା ଲୁହାଠାରୁ ବି ଟାଣ । ଯେଉଁ ବୁଢ଼ିଆ ହାତୀ ବାଘକୁ ପୁଞ୍ଚା ଡରେ ନାହିଁ, ସିଏ ବି ଗଣ୍ଡାର ପାଖ ମାଡ଼େ ନାହିଁ ।"

ଝିଅଟି କହିଲ, "ଓହୋ ! ଗୋଟିଏ ଗଣ୍ଡାର ମୁଁ ଦେଖନ୍ତି କି—ତାକୁ ମୁଁ କେବେହେଲେ ଡରନ୍ତି ନାହିଁ ।"

ବେପାରୀ ମନକୁ ମନ କହିଲା, "ଏ' ଯେ ଖାଣ୍ଟି ଜଙ୍ଗଲୀ ଲୋକର କଥା ।"

ଜଗୁଆଳ ଓ ତା'ର ସ୍ତ୍ରୀ ଏ କଥା ଶୁଣିପାରି ପିଲାଟିଆଡ଼କୁ ସ୍ନେହପୂର୍ଣ୍ଣ ଆଖିରେ ଅନାଇଲେ—କାଳେ ସେ ମନ ଦୁଃଖ କରିବ ।

ସେ କିନ୍ତୁ ନିଜେ ହସି ହସି କହୁଥାଏ, "ଓଃ ! ଜଙ୍ଗଲୀ ଜୀବଜନ୍ତୁଙ୍କୁ ମୁଁ ଖୁବ ଭଲପାଏ ।"

ବୁଢ଼ା ରାଜଭୃତ୍ୟଟି ମନଦୁଃଖରେ କହିଯାଉ-ଥାଏ, "ମୃଗୟା ନାହିଁ କି ଯୁଦ୍ଧ ନାହିଁ ! ଆମ ସମ୍ରାଟଙ୍କୁ ତେବେ ଅନ୍ୟ ରାଜାମାନେ କାହିଁକି ମାନ-ସମ୍ମାନ ଦେବେ ? ରାଜାର କାମ ହେଲା ରାଜ୍ୟ ଜୟ କରିବା ଆଉ ଯୁଦ୍ଧ କରିବା । ମୃଗୟା ମଧ୍ୟ ରାଜାଙ୍କ ଉପଯୁକ୍ତ ଖେଳ ।"

ପାଞ୍ଜିଆ ଉତ୍ତରରେ କହିଲା, "ଆମ ସମ୍ରାଟଙ୍କ [illegible] ଅନ୍ୟପ୍ରକାର । ଧର୍ମନୀତି ପ୍ରଚାର କରି

ସେ ରାଜ୍ୟ ଜିଣନ୍ତି । ଦୂର ଦୂରାନ୍ତ ଦେଶର ରାଜାମାନଙ୍କ ସହିତ ସେ ସଦାଳାପ କରିଥାନ୍ତି । ପଶ୍ଚିମ ଦେଶର ରାଜାମାନଙ୍କୁ ଓ ଲଙ୍କା ଅଧିପତିଙ୍କୁ ସେ ଜଣାଇଦେଇଛନ୍ତି ଯେ ନୀତିନିୟମଦ୍ୱାରା ହିଁ ସେ ରାଜ୍ୟ ଜୟ କରିବାକୁ ଚାହାନ୍ତି ।

''ଗତ ବର୍ଷ ସମ୍ରାଟ ତାଙ୍କ ନିଜ ପୁଅ ମହେନ୍ଦ୍ରଙ୍କୁ ସିଂହଳ (ଏବର ଶ୍ରୀଲଙ୍କା ବା ସିଂହଳ)କୁ ପଠାଇଥିଲେ । ସିଂହଳ ରାଜା ନିଜେ ଓ ତାଙ୍କର ସମସ୍ତ ଦେଶବାସୀ ବୌଦ୍ଧଧର୍ମ ଗ୍ରହଣ କରିଛନ୍ତି । କ୍ଷମା ଓ ଦୟାଧର୍ମର ଏହାହିଁ ପ୍ରଥମ ବିଜୟ ।''

ଯାତ୍ରୀମାନେ ସେଠା ଶୋଇବା ସ୍ଥାନକୁ ଚାଲିଗଲେ । ତା'ର ଘୋଡ଼ାଗୁଡ଼ିକ ଅଛନ୍ତି କି ନାହିଁ ଦେଖିବାକୁ ଗଲା ପଥର-କଟାଳି ।

ବମ୍ମୀ ପଚାରିଲା, "ଆମର ଏ ବନ୍ଧୁଙ୍କୁ ତାଙ୍କ ଘୋଡ଼ା ପାଖକୁ ଟିକିଏ ନେଇଯିବି କି, ଯାହାସବୁ କଥା ତା'ପରେ ବୁଝିବି ?" ମା ତା' କଥାରେ ରାଜି ହୁଅନ୍ତେ ସେ ଭଦ୍ରଲୋକଙ୍କ ସାଙ୍ଗରେ ଦୌଡ଼ି ଦୌଡ଼ି ଚାଲିଲା ।

ଜଗୁଆଳିଙ୍କ ପରିବାରଟି ନିଜ ଘରକୁ ଗଲେ । ତାଙ୍କ ବୁଢ଼ୀମା'ଙ୍କ ସାଙ୍ଗରେ ପିଲାମାନେ ଗୋଟିଏ କଣ-ବଖରାରେ ଶୁଅନ୍ତି । ଜଗୁଆଳିର ସ୍ତ୍ରୀ କହିଲା, "ସେଇ ବେପାରୀ ଜଣକ ବମ୍ମୀ ଆଡ଼କୁ ଭାରି କୌତୂହଳୀ ଦୃଷ୍ଟି ପକାଉଥିଲା । ମୋର ଆଶଙ୍କା ହେଉଛି ଯେ ଆମେ ତାକୁ ତା'ର ପ୍ରକୃତ ଜନ୍ମକଥା ଜଣାଇଲେ ସେ ବଡ଼ ମନକଷ୍ଟ କରିବ ।"

ବୁଢ଼ୀମା' ଉତ୍ତର ଦେଲା, "ସେ କଥା ଆଜି କହିଲେ ଯାହା, ବର୍ଷକ ପରେ କହିଲେ ବି ସେଇଆ; କହିବାକୁ ତ ହେବ ନିଶ୍ଚେ । ଆଲୋ ଝିଅ, ତା ଲାଗି ଏତେ ବିକଳ ହେଉଛୁ କାହିଁ ? ବମ୍ମୀ ଏ ଧକ୍କା ନିଶ୍ଚେ ସମ୍ଭାଳି ନେବ । ଆମେ ସବୁ ତାକୁ ଏତେ ଆପଣାର କରିଛୁ !"

ସ୍ତ୍ରୀଲୋକମାନେ ଶୋଇବାକୁ ଗଲାବେଳକୁ ବମ୍ମୀ କାନ୍ଦି କାନ୍ଦି ଫେରି କହିଲା, "ମା ମା ସେଇ ବେପାରୀ ଜଣକ ଘୋଡ଼ାଶାଳ ପଛପଟେ କଥାହେଉଥିଲା ଯେ, ମୁଁ କାଳେ ତୁମ ଝିଅ ନୁହେଁ ! ଏପରି ହୋଇପାରେନା !"

ତା' ମା କହିଲା, "ଆଇଲୁ ମା, ମୋ ପାଖକୁ ଆଇଲୁ । ହଁ, କଣ ହେଲା ମୋତେ କହ ।"

ବମ୍ମୀ ତା ମା'ପାଖେ ଯାଇ ବସିଲା ସତ, ହେଲେ ତା କାନ୍ଧରେ ମା'କୁ ଆଉ ହାତ ପକାଇବାକୁ ଦେଲା ନାହିଁ ।



ସ୍ୱାମୀ କହିଲା, "ଇରାନୀ ପଥରକଣ୍ଟାଳ, ଦାଉଧରୀଲବାଳ ଓ ମୁଁ ଚାଲୁଁ ଇରାନୀର ଘୋଡ଼ା ଦେଖିବାକୁ ।" କହୁ କହୁ ତା ଆଖି ପୁଣି ଲୁହରେ ପୂରିଗଲା । ତେବେ ବୁଢ଼ା ସେ ବେଶ ଦମ୍ଭରେ କହିଲାଗିଲା, "ଘୋଡ଼ାଶାଳରୁ ଅଭିଜ୍ଞବେଳକୁ ଶୁଣିପାରିଲି ସେ ବେପାରୀ କେତେକ କହୁଛି—ସେଇ ଝିଅଟି କଦାପି ତାଙ୍କ ଝିଅ ନୁହେଁ । ସେ ନଷ୍ଟେ ଗୋଟିଏ ଅନାଥ ପିଲା—ବୋଧହୁଏ ଜଙ୍ଗଲୀ ଝିଅ । ତାକୁ ସେମାନେ ଦୟାକରି ପାଳିଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟ କଥା ଯେ, ତାକୁ ସ୍ୱକରଣୀ ବା କ୍ରୀତଦାସୀ ବୋଲି ନକହି ସେମାନେ ତାକୁ ନିଜ ଝିଅ ବୋଲି କହୁଛନ୍ତି ।"

"ପୂର୍ବରୁ ଏକଥା ମୁଁ କେବେହେଲେ କହିନାହିଁ; କିନ୍ତୁ ମୁଁ ତ ତୋ ପରି ବା ବାପାଙ୍କ ପରି ଦେଖିବାକୁ ନୁହେଁ । କାହିଁକି ?"—ସ୍ୱାମୀ ଏ ପ୍ରଶ୍ନଟି କଲା ସିଧା ତା ମା'କୁ ।

ଜଗୁଆଳି ଘରକୁ ପଶିଲାବେଳେ ଏକଥା ସବୁ ଶୁଣି କହିଲା, "ଆମ ଝିଅଟି କେମିତି ଆମ ପାଖକୁ ଆଇଲା, ଅତୀତର ସେ ଘଟଣା ସବୁ ମୋର ମନେପଡ଼ୁଛି । ବହୁତ ବର୍ଷ ପୂର୍ବେ—ଆମେ ଯାତ୍ରୀମାନଙ୍କ ବିଶ୍ରାମଗୃହକୁ ଆସି ନ ଥାଉ । ତୋ ମା'କୁ ମୁଁ ମୋଟେ ଦେଖି ବି ନଥିଲି । ଆମ ଦୁହିଁଙ୍କ ଘର ଓ ପରିବାର ରହୁଥିଲେ ଶହ ଶହ ମାଇଲ ଦୂରରେ ।

"ମୋ ବାପା ଥିଲେ ହସ୍ତିନାରେ ଆମ ସମ୍ରାଟଙ୍କ ପାଖେ କର୍ମଚାରୀ । ସେତେବେଳେ ସମ୍ରାଟ୍ ନିଜେ ହସ୍ତିନାର ଶାସନକର୍ତ୍ତା ଥିଲେ । ମୋର ମା—ତୋର ଏଇ ବୁଢ଼ୀମା—ଜଣେ ଧନୀ ବଣିକଙ୍କ ଘରେ ତାଙ୍କର ସୁନ୍ଦରୀ ଝିଅ ଦଦଙ୍କର ପରିଚାରିକା କାମ କରୁଥିଲେ । ଏଇ ସୁନ୍ଦରୀ ଦଦଙ୍କୁ ଆମ ସମ୍ରାଟ ରାଜକୁମାର ଥିଲାବେଳେ ଭାରି ଭଲପାଉଥିଲେ । ତେବେ ବି ସମ୍ରାଟ ହୋଇ ପାଟଳିପୁତ୍ରକୁ ଆସନ୍ତେ ସେଇ ଦଦଙ୍କୁ ଛାଡ଼ିଆସିବାକୁ ବାଧ୍ୟ ହୋଇଥିଲେ । ମୁଁ ଆଗରୁ ବଡ଼ ହୋଇଥିଲି । ମୋର ନିଜର ଘର, ପିଲାପିଲି ସବୁ ଥିଲେ ।

"ଏହାପରେ ରାଜାଙ୍କ ସୈନ୍ୟବାହିନୀରେ କାମ କରିବାଲାଗି ମୋତେ ଡାକରା ମିଳିଲା । ମୁଁ ଅବଶ୍ୟ ନିରାପଦରେ ଘରକୁ ଫେରିଲି; ଦେଖେ, ମୋର ସ୍ତ୍ରୀ ଓ ପିଲାଏ ସମସ୍ତେ ଗୋଟାଏ



ମହାମାରୀ ରୋଗରେ ମରିଗଲେ । ଖାଲି ଏଇ ମା' ବୁଢ଼ୀଟି ବଞ୍ଚିଥିଲା । ସେ ମୋତେ ସବୁ କଥା କହିଲା ।

"ମୋର ମନ ଅତି ବିକଳ ହୋଇଗଲା । ଆମ ସମ୍ରାଟଙ୍କର ଶେଷ ଯୁଦ୍ଧ ଲାଗିଲା ଜଙ୍ଗଲପୂର୍ଣ୍ଣ କଳିଙ୍ଗ ଦେଶରେ । ସେଇ ଦୂରଦେଶର ଲଢ଼େଇକୁ ଯିବାକୁ ମୋତେ ଡାକରା ହେବାରୁ ମୁଁ ଖୁସିରେ ଚାଲିଗଲି ।

"ବହୁତ ଦିନ ଯାଏଁ ଏ ଲଢ଼େଇ ଚାଲିଲା । ଉଭୟ ପକ୍ଷର ସୈନିକମାନେ ଗାଁ ଗାଁ ପୋଡ଼ିଦେଲେ, ବହୁତ ଲୋକଙ୍କୁ ମାରି ଧନଦରବ ଲୁଟିନେଲେ । ଯୁଦ୍ଧରେ ଚାଷୀଙ୍କର ବହୁତ କ୍ଷତି ହେଲା । ଜଙ୍ଗଲି ଲୋକଙ୍କର ମଧ୍ୟ ସବୁ ଗଲା । ଏହି ଯୁଦ୍ଧବେଳେ ତୋ ମା'ର ପରିବାରର ସମସ୍ତେ ମରିଗଲେ । ଘର ବି ଗଲା । ତୋର ନିଜ ଲୋକେ ମଧ୍ୟ ସେମିତି ମରି ଯାଇଥିବେ । ସେତେବେଳେ ତୁ ମୋଟେ ଆଠମାସର ଛୁଆ ।"

ଏହା ପରେ କାହାଣୀଟି କହିଲା ଜଗୁଆଳିର ସ୍ତ୍ରୀ—"ସେତେବେଳେ ମୋର ମଧ୍ୟ ନିଜର ପରିବାର ଓ ଘରଦ୍ୱାର ଥାଏ । ମୋର ସ୍ୱାମୀ ଥିଲେ ଜଣେ ଚାଷୀ । ମୋର ତିନୋଟି ପିଲା ଥାଆନ୍ତି । ସବା ସାନଟି ଥିଲା ଅତି କଅଁଳ ଛୁଆ । ଆମ ଗାଁ ଓ ଜମି ଜଙ୍ଗଲ ପାଖରେ ଥିଲା । କିଛିଦିନ ଆମେ ନିରାପଦରେ ରହିଥିଲୁ । ହଠାତ୍ ଦିନେ ଦଳେ ସୈନ୍ୟ ଆସି ଆମ ଘରଦ୍ୱାର ପୋଡ଼ିଦେଲେ । ମୋର ସ୍ୱାମୀ ଓ ପିଲାଙ୍କୁ ବି ହାଣିପକାଇଲେ । ମୁଁ ବଞ୍ଚିଗଲି । କାରଣ ସୈନ୍ୟଦଳଟି ଅନ୍ୟ ଆଡ଼ୁ ଡାକରା ପାଇ ଦୌଡ଼ିପଳାଇଲେ ।

"ମୁଁ ମନଦୁଃଖରେ ଭୂଇଁରେ ଗଡ଼ୁଥାଏ । ସେତିକିବେଳେ ଜଙ୍ଗଲରୁ କାନ୍ଦ କାନ୍ଦ ଗୋଟିଏ ଛୁଆ ଝିଅ ଗୁରୁଣ୍ଡି ଗୁରୁଣ୍ଡି ମୋ ପାଖକୁ ଚାଲିଆସିଲା । ମୁଁ ତାକୁ କୋଳ କରନ୍ତେ ସେ ଥକ୍କା ହୋଇ ଶୋଇପଡ଼ିଲା । ପରେ ମୁଁ ତାକୁ ସେତେ ତଡ଼ିଲେ ସୁଦ୍ଧା ସେ ମୋତେ ହିଁ ଜାବୁଡ଼ିଧରି ରହିଲା; ମୋଟେ ଛାଡ଼ିଲା ନାହିଁ ।

"ଦିନ ଗଡ଼ିଚାଲିଥାଏ । ସେଇ ଝାମ୍ପୁଡ଼ିମୁଣ୍ଡୀ ଝିଅଟିକୁ ମୁଁ ନିଜର କରି ଭଲପାଇଲି । ବଣର କୋଳି ଓ ଫଳମୂଳରେ ଆମେ ଚଳୁଥାଉ । ଦିନକର ମୁଁ ଜଙ୍ଗଲରେ ବହୁତ ଦୂରକୁ ଚାଲିଯାଇଥାଏ ଖାଇବା ଦରବ ଖୋଜି ଖୋଜି । ଦୈବାତ୍ ଗୋଟିଏ ପଥରରେ ଝୁଣ୍ଟି ପଡ଼ି ମୁଁ ଅଚେତ ହୋଇଗଲି । ଚେତା ପାଇ ଦେଖେଁ, ଜଣେ ପୁରୁଷଲୋକ ମୋ ପାଖେ ନଇଁପଡ଼ି ମୁହଁରେ ମୋର ପାଣି ଛାଟୁଛି ।

"ଲୋକଟିକୁ ଦେଖି ମୁଁ ଖୁବ ଡରିଗଲି । ସେ କିନ୍ତୁ ମୋତେ ବୋଧ ଦେଇ କହିଲା, —"ଡରନା । ଗୋଟିଏ ସ୍ତ୍ରୀଲୋକ ବା ସାନ ପିଲାକୁ ମୁଁ କେବେ ମାରିବି ନାହିଁ । ଗୋଟିଏ ଝିଅର କାନ୍ଦ ଶୁଣିବାରୁ ପବ ମୁଁ ଆସିଲି ।" ତା ପରେ ସେ ଝିଅକୁ ଚାହିଁ ସେ ପଚାରିଲେ —"ଏଇଟି କ'ଣ ତୁମ ଝିଅ ?"



"ମୁଁ ତାକୁ ଗ୍ରହଣ କରିଲି, ସୈନ୍ୟଦଳ ମୋ ନିଜ ପିଲାଙ୍କୁ ହାଣିଦେବା ପରେ ଏଇଟି ତା' ମନକୁ ଆସି ମୋ ପାଖେ ପାଖେ ଲାଗିରହିଛି । କିନ୍ତୁ ତାକୁ ଖୁଆଇପିଆଇ ବଞ୍ଚାଇବାକୁ ମୋର ସାଧ୍ୟ ନାହିଁ । ତୁମେ ଏହାକୁ ନେଇଯାଇ ଭଲରେ ପାଳ ।"

ଏଥର ଜଗୁଆଳ ପୁଣି କହି ଲାଗିଲା—

"ମୁଁ ସେଇ ସ୍ତ୍ରୀଲୋକଟିକୁ କହିଲି, ଏକାଟିଆରେ ମୁଁ ଝିଅଟିକୁ କିପରି ପାଳିବି ? ତୁମେ ଯଦି ମୋ ସାଥିରେ ଆସିବ ତେବେ ଦୁହିଁଙ୍କୁହିଁ ମୁଁ କିଛି ଦିନ ଲାଗି ଖୁଆଇପିଆଇ ବଞ୍ଚାଇବି । ତୁମ ଦେହରେ ତାକତ ଆସିଲେ ତୁମେ ତୁମ ବାଟରେ ଚାଲିଯାଇପାରିବ ।

"ଏହା ପରେ ଆମେ ସମସ୍ତେ ଏକାଠି ରହିଲୁଁ । ଯୁଦ୍ଧ ସରିବା ପରେ ସମସ୍ତଙ୍କୁ ନେଇ ମୁଁ ମୋ ଘରକୁ ମା'ଙ୍କ ପାଖକୁ ଗଲି । ସେ ତୁମ ଦୁଃଖ କାହାଣୀ ଶୁଣି ଆନନ୍ଦରେ ତୁମକୁ ଘରେ ରଖିଲେ । ତୋ ମା'କୁ ସେ ନିଜର ବୋହୂ କଲେ, ଆଉ ତୋତେ କଲେ ନିଜର ନାତୁଣୀ ।

"ଏ ଘଟଣାର ଅଳ୍ପ ଦିନ ପରେ ଆମ ସମ୍ରାଟ ଭଗବାନ ବୁଦ୍ଧଙ୍କ ଧର୍ମ ଗ୍ରହଣ କଲେ । ତାଙ୍କ ଯୁଦ୍ଧବିଗ୍ରହ ଓ ରାଜ୍ୟ ଜୟ ଫଳରେ ଲୋକଙ୍କର ଯେଉଁ ଦୁଃଖଦୁର୍ଦ୍ଦଶା ଓ ହାଣକାଟ ହେଲା, ସେଥିଲାଗି ତାଙ୍କର ବଡ଼ ମନକଷ୍ଟ ହେଲା । ସେ ପ୍ରତିଜ୍ଞା କଲେ ଆଉ ଯୁଦ୍ଧ କରିବେ ନାହିଁ । ତାଙ୍କର ଗୋଟିଏ ଅନୁଶାସନରେ ସେ ଲେଖିଛନ୍ତି—'ଅତୀତରେ ଯେତେ ଲୋକ ମରିଛନ୍ତି ବା ଦାସତ୍ୱ କରିଛନ୍ତି ତା'ର ଏକଶତାଂଶ ବା ଏକସହସ୍ରାଂଶ ଯଦି ଏବେ ସେଇପରି ଦୁଃଖରେ ପଡ଼ନ୍ତି, ତେବେ ସମ୍ରାଟ ଅତ୍ୟନ୍ତ କଷ୍ଟ ପାଇବେ । ସେ ସ୍ଥିର କଲେ ଯେ ଏକମାତ୍ର ଧର୍ମଦ୍ୱାରା ହିଁ ସେ ତାଙ୍କର ସମଗ୍ର ସାମ୍ରାଜ୍ୟ ଶାସନ କରିବେ । ତେଣୁ ଏକ ନୂଆ ଜୀବନର ଆରମ୍ଭ ହେଲା । ମୁଁ ଶୁଣିଲି ଯେ ରାଜକର୍ମଚାରୀମାନେ ଗୋଟିଏ ବଡ଼ ଆଶ୍ରମ-ଗୃହ ଲାଗି ଜଗୁଆଳ ଖୋଜୁଛନ୍ତି । ମୁଁ ସେଇ କାମଟି ଲାଗି ପ୍ରାର୍ଥୀ ହେଲି । କାମଟି

ମୋତେ ମିଳିବାରୁ ଆମର ଜୀବନ ଏଇଠାରେ ପୁଣି ନୂଆ ହୋଇ ଆରମ୍ଭ ହେଲା । ମୋ ସାଙ୍ଗରେ ଆସିଲେ ତୋର ମା' ଓ ବୁଢ଼ୀମା । ଅଳ୍ପ ଦିନ ପରେ ଗୋଟିଏ ପରେ ଗୋଟିଏ ହୋଇ ଆମର ଦୁଇଟି ପୁଅ ଜନ୍ମ ହେଲେ ।"

ବମ୍ବୀ ଏତେବେଳଯାକେ ନୀରବରେ ଏ ଦୀର୍ଘ କାହାଣୀଟି ଶୁଣୁଥିଲା । ସେ ଗମ୍ଭୀର ଭାବେ କହିଲା, "ସେଇ ଲୋକଟି ଯାହା କହୁଛି, ତାହା ନିଶ୍ଚୟ ସବୁ ସତ ! ମୁଁ ତୁମର ଝିଅ ନୁହେଁ । ମୋ ବାପ ମା କିଏ, ମୁଁ ଜାଣେ ନାହିଁ ।"

ଆଉ ଅଶ୍ରୁ ଧରି ନପାରି ଏଥର ବୁଢ଼ୀମା କହିପକାଇଲେ, "ତୋ ବାପ ମା'ଙ୍କୁ ତୁ ଜାଣିନୁ ? ବାପ ମା ସବୁ ପିଲାଙ୍କୁ ରକ୍ଷା କରନ୍ତି, ତାଙ୍କୁ ପାଳନ୍ତି ! ତୋର ନୂଆ ମା'ଟି ତୋତେ ଖୋଇଦେଇ ନପାଳିଥିଲେ ତୁ ଏକାକିଆ ହୋଇ ବଣରେ କ'ଣ ବଞ୍ଚିଥାନ୍ତୁ ? ତା'ପରେ ମୋ ପୁଅ ଯଦି ତୁମ ଦୁହିଁଙ୍କୁ ଆଶ୍ରୟ ଦେଇ ରକ୍ଷା ନକରିଥାନ୍ତା, ତେବେ ତୁମେ କଣ ଏତେ ଦିନ ବଞ୍ଚିଥାନ୍ତ ? କୁନି ପୁଅ ଅନୁ ନିଦରୁ ଉଠି ଆଗ ତୋତେ ଖୋଜେ କି ନାହିଁ ? ତେବେ ସେମାନେ ତୋର ବାପା, ମା ଆଉ ଭାଇ କି ନୁହଁ ?"

ଏଥର ବମ୍ବୀ ହସ ହସ ମୁହଁରେ ବୁଢ଼ୀମା କୋଳରେ ପଶି କହିଲା—"ହଁ, ସେମାନେ ମୋର, ମୋର ।" ହାଇ ମାରୁ ମାରୁ ସେ ପୁଣି କହିଲା, "ମୋତେ ଅତି ଭୋରରୁ ଡାକଦେବୁ । ଏତେ ଅତିଥି ଆସିଛନ୍ତି । ମୁଁ ବାପା ମା'ଙ୍କୁ ଅନେକ କାମରେ ସାହାଯ୍ୟ କରିବ । ସେଇ ହାତୀଧବଳ ମଧ୍ୟ କହିଛନ୍ତି ସେ ଏକଶିଙ୍ଘିଆ ଗଣ୍ଡାରର ଅନେକ ନୂଆ ଗପ କହିବେ ।"

# କାବେରୀପଟ୍ଟନମ୍‌ରେ ବାଣିଜ୍ୟ

ସେ ଦିନ କାବେରୀପଟ୍ଟନମ୍ ନଗରରେ ଖୁବ୍ ଚହଳ । ଏହି ବୃହତ୍ ନଗରୀଟି ଚୋଳରାଜାମାନଙ୍କର ରାଜଧାନୀ । ଗୋଟିଏ ବଡ଼ ଜାହାଜ ଏବେ ଆସିଛି ବହୁତ ଦାମିକା ଜିନିଷ ନେଇ । ସେଇସବୁ ବାଣିଜ୍ୟ ଦ୍ରବ୍ୟ ଏଠାରେ ଖାଲି କରିଦେଇ ଜାହାଜଟି ପୁଣି ଏ ଦେଶର ଜିନିଷ ବୋଝେଇ କରିବ । ପୁରାତନ ଦୁର୍ଗ-ନଗରୀ ପୁହାରରୁ ଦଳ ଦଳ ଲୋକ ବଜାରର ପ୍ରଧାନ ରାସ୍ତାରେ ଯାଇ ସମୁଦ୍ରକୂଳିଆ ସେହି ସହରରେ ଠୁଳ ହେଉଥାନ୍ତି । ପୁହାର ନଗରୀରେ ରହିଛି ରାଜାଙ୍କ ନଅର ଓ ଧନୀଲୋକଙ୍କ ଘର; କିନ୍ତୁ କାବେରୀପଟ୍ଟନମ୍ ନଗରୀଟି ଅନ୍ୟପ୍ରକାରର । ବହୁତ ବିଦେଶୀ ନାବିକ ଓ ବେପାରୀଙ୍କର ତାହା ନିବାସ । ସେହି ନଗରରେ ବଡ଼ ବଡ଼ ଗୋଦାମ, ଜାହାଜଘାଟ ଓ ଶୁଳ୍କ କେନ୍ଦ୍ର ମଧ୍ୟ ଥାଏ । ନଦୀକୂଳ ବନ୍ଦରରେ ଭର୍ତ୍ତିହୋଇଛି ଜାହାଜ, ମାଲବୁହା ଡଙ୍ଗା ଓ ନୌକା ଆଦି । ଦୂରରେ ଗୋଟିଏ ଉଚ୍ଚ ବତୀଖୁଣ୍ଟ ମଧ୍ୟ ଦେଖାଯାଉଛି ।

ସାତ ଜଣ ଯୁବକବନ୍ଧୁ ଆସି ଏକଜୁଟ ହେଲେ ଅପରାହ୍ଣ ସମୟରେ । ନଦୀକୂଳର ଠିକ୍ ଉପରେ ଛୋଟିଆ ଗୋଟିଏ ଚଟାଣ ଥାଏ । ତାହାରି ଉପରେ ଠିଆହୋଇ



ସେମାନେ ବାଲିରେ ଲୋକଙ୍କ ଭିଡ଼କୁ ଅନାଉଥାନ୍ତି । ଏହି ଯୁବକମାନେ ହେଲେ, ଯାଉନାଗ ଓ ଯାଦୁବନ ହେଲେ ଧନୀ ବେପାରୀଙ୍କ ପୁଅ; ଶ୍ରୀଲକ ବ୍ରାହ୍ମଣଙ୍କ ପୁଅ ହେବ ସେବାକ, ବିଶ୍ୱବିଦ୍ୟାଳୟର ଜଣେ ପଣ୍ଡିତଙ୍କ ପୁଅ ଅପ୍ସାର, ବିହୁଳ ହେଲା ଗୋଟିଏ ଜାହାଜ କପ୍ତାନଙ୍କ ପୁଅ ଓ ବନ୍ଧୁଭର ଜଣେ କଟକ ସନ୍ତାନ ।

ଏତକ ବେଳେ ଦେଖାଗଲା ସେ କୁମ୍ଭାରପୁଅ ଇଲମ ଆସୁଛି । ସେ ତା'ର କାନ୍ଧରେ ଥିବା ଭାର ଉପରେ ଅଳ୍ପ ନଇଁପଡ଼ିଥାଏ । "ଇଲମ, ଏ ଇଲମ ! ତୋର ହାଣ୍ଡିଭରଟାକୁ ଟିକିଏ ଓହ୍ଲାଇ ରଖ । ଆ, ଆମ ସାଙ୍ଗରେ ବସି ମିଠାଇ ଖାଇବୁ ।"– ଡାକ ପକାଇଲା ଷଣ୍ଢୁଭର ।

କାନ୍ଧରୁ ଭାରଟି ଓହ୍ଲାଇ ରଖି ଇଲମ ଟିକିଏ ଦମ୍ ମାରିଲା । ସେ କହିଲା, "ଆଜି ସକାଳେ ମୁଁ ଦଶଟି ହାଣ୍ଡି ବିକିଲି; ତା'ପରେ ବଜାରକୁ ଯାଇ ମୋ ମା'ଙ୍କ ଦେଇଥିବା ଜିନିଷ କିଣିଲି—ଚାଉଳ, ଲୁଣ, ଶୁଖୁଆ ଓ ମହୁ । ମୁଁ ଯେତକ ଟଙ୍କା ପାଇଥିଲି ଜିନିଷ କିଣି ସେଥିରୁ କେତେଗୁଡ଼ାଏ ବଳିକା ରହିଛି । ହେଉଛି ଦେଖ ।" ସେ ବେଶ୍ ଉଚ୍ଚ ସ୍ୱରରେ କହିଲା ।

ଷଣ୍ଢୁଭର ଗୋଟିଏ ଗୀତ ଆରମ୍ଭ କରିଦେଲେ—"କିଏ ନବ ହାଣ୍ଡି ! ଚକ୍‌ଚକ୍ କଳା ହାଣ୍ଡି ! ନାଲି ଓ କସରା ହାଣ୍ଡି ! ହାଣ୍ଡିର ଡାକ୍ରିରେ ରହିଛି ଦେଖ ନକ୍ସା କାମ ! ଚଉଡ଼ା ମୁହଁ ହାଣ୍ଡି ନେବ କି ଶୁଅଅଣ୍ଡିଆ ହାଣ୍ଡି ନେବ ? ଏଇ ହାଣ୍ଡିରେ ଭାତ ରାନ୍ଧି ଖାଇ ମଣିଷ ବଞ୍ଚନ୍ତି । ମଣି ମଲା ପରେ ଏଇଥିରେ ଯାଇଥାଏ ତାଙ୍କ ଅସ୍ଥି !"



ଗୋଟିଏ ପଥରରେ କେଉଁଠା ମିଠେଇ ବାଢ଼ି ଇଲମ ହାତକୁ ବଢ଼ାଇ ଦଢ଼ାଉ ସାଦୁବନ କହିଲା, "ଚୁପ୍ କର ! ଚୁପ କର ! ଆଜି ସଭା ପରବ ଦିନରେ ତୁ କଣ ମଲ୍ଲ ଗାତ ହାଣ୍ଡିର ଗୀତ ବୋଲିବୁ ! ଇଲମର ବାପା ତ ସେ ହାଣ୍ଡି ଗଢ଼ନ୍ତି ନାହିଁ !"

ଇଲମ କହିଲା, "ହଁ, ହଁ, ମଲ ଗାତ ହାଣ୍ଡି ଆଉ ଜଣେ କୁମ୍ଭାର ଗଢ଼ନ୍ତି । ଏ ମିଠେଇ ତ ଭାରି ବଢ଼ିଆ ରେ ! କ'ଣ ସେଇ ବଜାର ଦୋକାନରୁ ଆଣିଲୁ ?"

ସାଦୁବନ କହିଲା, "ନାହିଁ, ନାହିଁ, ଖାସ୍ ବାପାଙ୍କ ଲାଗି ମା କିଣିଛନ୍ତି । ସେ ଗୋଟାଏ ଦୀର୍ଘ ସମୁଦ୍ରଯାତ୍ରା ପରେ ମୋଟେ କାଲି ଫେରିଛନ୍ତି ପରା ! ଯବନ ଦେଶ, ଗ୍ରୀସ୍ ଓ ରୋମ୍‌ର ଜାହାଜଙ୍କୁ ବିକିବା ଲାଗି ସେ ଉତ୍ତର ଦେଶକୁ ଯାଇଥିଲେ ଜିନିଷ ସଂଗ୍ରହ କରିବାକୁ ।"

ବିହୁନ ପଚାରିଲା, "ତୋ ବାପା କ'ଣ ସମୁଦ୍ରପଥରେ ଯାଇଥିଲେ ନା ସ୍ଥଳପଥରେ ମ ?"

ସାଦୁବନ କହିଲା, "ଏଥର ସେ ଯାଇଥିଲେ ଗୋଟିଏ ଉପକୂଳ ଯାତ୍ରୀ-ଜାହାଜରେ ।"

ଇଲମ ପଚାରିଲା, "ଆଚ୍ଛା, ଲୋକେ କ'ଣ ସେଇ ଭୀଷଣ ଜଙ୍ଗଲିଆ ପାହାଡ଼ମାଳ ଡେଇଁ ଅହୁର ଦୂରକୁ ଯାଆନ୍ତି ?"

ଅପ୍ପାର କହିଲା, "ହଁ, ହଁ, ଦକ୍ଷିଣାପଥ ଓ ଉତ୍ତରାପଥ ମଧ୍ୟରେ ସବୁକାଳେ ଯିବା-ଆସିବା ଥିଲା ।"

ସାଦୁବନକୁ ଅନାଇଁ ସେ ପଚାରିଲା, "ଆଚ୍ଛା, ତୋ ବାପା ଥରେ ସ୍ଥଳପଥରେ ସେଠିକି ଯାଇଥିଲେ ପରା ?"

ସାଦୁବନ ଜବାବ ଦେଲା, "ହଁ, ଯେଉଁ ଥରକ ସେ ଘୋଡ଼ା କିଣିବାକୁ ଯାଇଥିଲେ । ସେ ଆମ ଦେଶରୁ ନିଅନ୍ତି ସୂତାଲୁଗା, ମସଲପାତି, ମୁକ୍ତା, ମୁକ୍ତାଖୋଳ ଶାମୁକା ଓ ଶଙ୍ଖ; ଆଉ ଉତ୍ତର ଦେଶରୁ ଆଣନ୍ତି ଘୋଡ଼ା, ମଣିମାଣିକ, ଔଷଧ, ସୁଗନ୍ଧ ଦ୍ରବ୍ୟ ଏମିତି କେତେ ଚିଜ । ଏ ଦେଶର ରାଜାଙ୍କର ସୈନ୍ୟବାହିନୀ ଲାଗି ସବୁବେଳେ ଘୋଡ଼ା ଦରକାର ପଡ଼େ । ଧନୀଲୋକେ ମଣିମାଣିକ୍ୟ, ଔଷଧ, ସୁଗନ୍ଧ ଦ୍ରବ୍ୟକୁ ବହୁତ ଖୋଜନ୍ତି । ଯବନ ଦେଶର ବେପାରୀମାନେ ବି ଏସବୁ ଚିଜ ଏଠୁ କିଣି ନିଅନ୍ତି ।"

ଅପ୍ପାର କହିଲା, "ଶହ ଶହ ବର୍ଷ ଧରି ଏହିପରି ମାଲ ସହିତ ଜ୍ଞାନର ମଧ୍ୟ ଆଦାନ-ପ୍ରଦାନ ଚାଲିଛି । ମଗଧ ଦେଶର ମୌର୍ଯ୍ୟ ରାଜାମାନେ ଦକ୍ଷିଣରୁ ମୁକ୍ତା କିଣି ନେଇ ଯାଉଥିଲେ । ଶ୍ରେଷ୍ଠ ମୌର୍ଯ୍ୟ ନୃପତି ଅଶୋକ ଆମ ଦେଶକୁ ଧର୍ମ ଓ ଆୟୁର୍ବେଦ ଶିକ୍ଷା ଦେବାଲାଗି ପଣ୍ଡିତମାନଙ୍କୁ ପଠାଇଥିଲେ । ଏ ପଣ୍ଡିତମାନେ ଲଙ୍କାକୁ ମଧ୍ୟ ଯାଇଥିଲେ ।"



ହଠାତ୍ କ୍ରିଷ୍ଟୋଫର ନଉବାଲିରେ ବୁଲୁଥିବା ଗୋଟିଏ ଡେଙ୍ଗା ପିଲାକୁ ହାତ ହଲାଇ ଠାରିବାକୁ ଲାଗିଲା । ସେ ତା' ସାଙ୍ଗମାନଙ୍କୁ କହିଲା, "ଦେଖ, ଦେଖ, ଶୁଆଧରାପିଲା କିମିତି ମୁହଁ ଶୁଖାଇ ବୁଲୁଛି । ମୁଁ ତାକୁ ଡାକିଆଣେ । ସାଦୁବନ, ମୋ ଖାଇଟା ପରା ! ମୋ ଖାଇର ମିଠେଇତକ ତାକୁ ଦେବୁ !"

ଗରିବ ପିଲା 'କାର' ବେଶ୍ ଡେଙ୍ଗା, ପତଳା ଆଉ କଳା ରଙ୍ଗର । ପ୍ରାୟ ସଦାବେଳେ ତା' ମୁହଁଟା ହସ ହସ; ଆଉ କାନ୍ଧରେ ବସିଥିବ ଗୋଟାଏ ଶାଗୁଆ ରଙ୍ଗର ଶୁଆ । କାରି ହାତରେ ଗୁଡ଼ାଏ ଶୁଆ ଆଉ ସେଗୁଡ଼ା ପିଞ୍ଜରା ଭିତରେ । କ୍ରିଷ୍ଟୋଫର ତା' ପାଖକୁ ଯାଆନ୍ତେ ସେ ମୁହଁଟା ବୁଲାଇନେଲା । କ୍ରିଷ୍ଟୋଫର କିନ୍ତୁ ତାର ହାତ ଧରି ଟାଣିଆଣିଲା ତା' ସାଙ୍ଗରେ ଗପି ଗପି ।

କ୍ରିଷ୍ଟୋଫର ତାକୁ ନିଜ ପାଖରେ ବସାଇଲା ଓ ସେ ସହଜରେ କଥା କହିବ ନାହିଁ ଜାଣି ନିଜେ ମୂଳ କଥାଟି ପକାଇଲା । କହିଲା, "ପେନାନ, ତୋ ବାପା ରାଜାଙ୍କ ଶୁଳ୍କ-ସଂଗ୍ରହଶାଳାରେ କ'ଣ କାମ କରନ୍ତି ! ଆମକୁ କହିଲୁ, କ'ଣ ଦରବସ୍ତୁ ଅଛି ?"

ପେନାନ ବୁଝାଇଦେଲା, "ଜାହାଜମାନଙ୍କରେ ବୋଝେଇ ହେବା ପୂର୍ବରୁ ମାଲ ଉପରେ ରାଜାଙ୍କ ବୋଝେଇ ଚିହ୍ନ—ଲଙ୍ଗଡ଼ଟିକା ମହାବଳ ବାଘ—ବାଡ଼ିଅଯାଏ । ତେଣୁ ଆଗ ମାଲର ଦରଦାମ ସ୍ଥିର କରି ତା'ର ଶୁଳ୍କ ହିସାବ କରି ନିଆଯାଏ । ଏ କାମ ନ ହେବାଯାଏ ମାଲଗୁଡ଼ିକ ବେପାରୀଙ୍କ ଗୋଦାମ ଆଗରେ ଗଡ଼ୁଥାଏ । ଜାହାଜରୁ ...ଯାଇଥିବା ମାଲଗୁଡ଼ିକ ମଧ୍ୟ ଶୁଳ୍କ ଦେବାକୁ ପଡ଼େ । ତେଣୁ ସେଗୁଡ଼ିକର ମୂଲ୍ୟ ନିର୍ଦ୍ଦିଷ୍ଟ ହେବା ଆଉ ରାଜାଙ୍କ ମୋହର ଦେବା କାମ ସରିଲା ପରେ ତାହା ବେପାରୀମାନେ ପାଇପାରନ୍ତି ।"

କ୍ରିଷ୍ଟୋଫର ପଚାରିଲା, "ଆଚ୍ଛା, ଯବନମାନେ ତ ଜାହାଜ ନେଇ ଆମ ଦରବ କିଣିବାକୁ ଆମର ଗାଁକୁ ଆସୁଛନ୍ତି । ତେବେ ଆଜି ସାଦୁବନର ବାପାଙ୍କ ଘର ବଡ଼ ବଡ଼



ବେପାରୀ କାହିଁକି ଜାହାଜରେ ଜଳପଥରେ ଅଥବା ଶଗଡ଼ମାନଙ୍କ ପଶୁ ନେଇ ସ୍ଥଳପଥରେ ଯାଇ ତାଙ୍କର ଲାଗି ମାଲ କିଣିଆଣନ୍ତି ?"

ସାଧୁବଣ କହିଲା, "ଭଲ କଥାଟିଏ ପଚାରିଛୁ । ଆମ ବାପା ଜାହାଜ ନେଇ ସମୁଦ୍ର ପଥରେ ଗଙ୍ଗା ନଦୀର ମୁହାଣ ବା ଇରାବତୀ ନଦୀର ମୁହାଣକୁ ଯାଆନ୍ତି । ପୁଣି ଆହୁରି ବହୁତ ଦୂରରେ ପୂର୍ବାଞ୍ଚଳର ଦ୍ୱୀପମାନଙ୍କୁ ମଧ୍ୟ ଯାଆନ୍ତି । ଆମ ନିଜର ଯେଉଁ ସବୁ ମାଲ ଲୋଡ଼ା ତାକୁ ଛାଡ଼ି ଏହି ଯବନମାନଙ୍କୁ ମଧ୍ୟ ସେ ମାଲ ଯୋଗାନ୍ତି । ଯବନମାନେ କିଣନ୍ତି ଗୋଲମରିଚ, ମୁକ୍ତା ।"

ଶୁଆଧରାଳ କାଶରୁ ଟିକିଏ ଖୁସି କରିବାଲାଗି ଖଲ୍ଲୁଭଇ ଆଗଭର ହୋଇ କହିଲା, "ଆଉ ଶୁଆ ବି କିଣନ୍ତି ସେମାନେ ।" କିନ୍ତୁ କାହାର ମୁହଁ ଛୁଞ୍ଚାଡ଼ି ଥାଏ ।

ସାଧୁବନ କହିଚାଲିଲା, "ହଁ ହଁ—ଶୁଆ, ମୟୂର, ମାଙ୍କଡ଼, ତା' ଛଡ଼ା ସୂକ୍ଷ୍ମ ମସଲିନ୍ ବସ୍ତ୍ର, ହାତୀଦାନ୍ତ, କଇଁଛଖୋଳ ଓ ବୈଦୂର୍ଯ୍ୟ ମଣି । ଧନୀ ଯବନମାନେ ବୈଦୂର୍ଯ୍ୟ ମଣିଦ୍ୱାରା ସୀଲମୋହର କରିବାକୁ ଖୁବ ପସନ୍ଦ କରନ୍ତି । ସେମାନେ ଏସବୁ ମାଲ ପ୍ରାପ୍ତ ସୁନା ଦେଇ କିଣନ୍ତି ।"

ସେବାନ କହିଲା, "ଯବନମାନେ ବିକିବାକୁ ମଧ୍ୟ ଢେର ଆଣନ୍ତି । ଅଙ୍ଗୁର ରସର ମଦ ଓ ତା'ର ସୁନ୍ଦର ପାତ୍ର, ଚିନାମାଟି ବାସନ, କାଚତିଆରି ଦରବ ଆଉ ବିଭିନ୍ନ ପ୍ରକାରର ବୀଜ ।"

ସାଧୁବନ କହିଲା, "ସେମାନେ ମାଲ୍ ବିକିବାକୁ ଆଣନ୍ତି ସେ, ହେଲେ ତାଙ୍କ ଜିନିଷର ଏଠାରେ ଯାହା ଚାହିଦା ତାହା ଅପେକ୍ଷା ତାଙ୍କ ଦେଶରେ ଆମ ମାଲ୍‌ର ଚାହିଦା ବହୁତ ବେଶୀ । ସେହି କାରଣରୁ ଆମର ବେପାରୀମାନେ ବହୁ ଦୂର ଦେଶକୁ ଯାଇ ମାଲ୍ ସଂଗ୍ରହ କରି ଆଣନ୍ତି । ତାଙ୍କର ଏହି ବ୍ୟବସାୟଦ୍ୱାରା କେବଳ ସେମାନେ ଯେ ଧନୀ ହୁଅନ୍ତି ତାହା ନୁହେଁ, ଆମର ଏ ନଗରବାସୀ ଓ ଆମ ରାଜା ମଧ୍ୟ ଧନ ଅର୍ଜନ କରନ୍ତି । ଆମ ବେପାରୀମାନେ ଗୋଲମରିଚ ଆଣନ୍ତି ଆମ ନିଜ ଦେଶରୁ । ସେମାନେ ପୂର୍ବଦିଗର ଦେଶମାନଙ୍କୁ ଯାଇ ସେଠାରୁ ମଧ୍ୟ ଗୋଲମରିଚ ଓ ମସଲା ଆମଦାନୀ କରନ୍ତି । ଆମ ନିଜ ଦେଶର ସୈନ୍ୟବାହିନୀଙ୍କ ବର୍ମ ତିଆରି ଲାଗି ମହାବଳ ବାଘ ଓ ଚିତା ବାଘର ଚମଡ଼ା ଲୋଡ଼ାହୁଏ । ଏସବୁ ବାଘଛାଲ ଯବନମାନେ ମଧ୍ୟ କିଣନ୍ତି । ତେଣୁ ଆମ ବେପାରୀମାନେ ଆମ ଜଙ୍ଗଲୀ ଶିକାରୀଙ୍କଠାରୁ ଜନ୍ତୁଛାଲ ଓ ହାତୀଦାନ୍ତ ସଂଗ୍ରହ କରନ୍ତି । ଆମ ଦେଶର ସମୁଦ୍ରକୂଳରୁ କଇଁଛ ଖୋଳ ମିଳେ । ମାଲୟ ଉପଦ୍ୱୀପରୁ ବି କଇଁଛଖୋଳ ଆମଦାନୀ ହୁଏ ।"

ଏଣିକି ପଡ଼ିଲା ସତ୍ୱାନର କହିବା ପାଳି । ସେ କହିଲା, "ଏଇସବୁ ମାଲ୍ ଲାଗି ଯବନଙ୍କ ଚାହିଦା ଅତି ପ୍ରବଳ । ସେମାନେ ସୂକ୍ଷ୍ମ ମସଲିନ୍ ବହୁତ କିଣନ୍ତି । ତାଙ୍କଠାରୁ ସୁନା ଆସିବାରୁ ଆମ ରାଜକୋଷ ପୂର୍ଣ୍ଣ ହୋଇଥାଏ । ତାଙ୍କର ନାବିକ, ନଗରବାସୀ ଓ ଗ୍ରାମବାସୀ ପ୍ରଭୃତି ଆମଠାରୁ ଚାଉଳ, ମାଛ, ରାଶିତେଲ, କଦଳୀ, ପଣସ ଆଦି କିଣି ଚାଲନ୍ତି ।"

ବଡ଼ ବ୍ୟଗ୍ରହୋଇ ଇଲମ ପଚାରିଲା, "ଆଚ୍ଛା, ଯଦି ନାବିକମାନେ ଏତେ ଚାଉଳ କିଣନ୍ତି ତେବେ ଆମ ସହର ଦରିଦ୍ରମାନେ ଚାଉଳ କି ମାଛ ପାଇବେ କାହୁଁ ?" କାରି ମଧ୍ୟ ଗମ୍ଭୀରସ୍ୱରରେ ଏ କଥାରେ ସମର୍ଥନ ଜଣାଇଲା ।

ସେବାନ ତାଙ୍କୁ କହିଲା, "ଆରେ ବ୍ୟସ୍ତ ହେଉଛୁ କିଆଁ ? କାବେରୀ ନଦୀଉପତ୍ୟକାର ଚାଷଜମି ପରି ଉର୍ବର ଜମି ଅଛି କେଉଁଠି ନାହିଁ କି ଆଉ ଆମ ଉପକୂଳର ମାଛ ପରି ଏତେ ଆଉ କେଉଁଠି ମିଳେନା; ତେଣୁ ସମସ୍ତଙ୍କ ଚଳିଲାଭଳି ବହୁତ ଦରବ ରହିଛି ଆମ ଦେଶରେ ।"

ହଠାତ୍ ଉତ୍ତେଜିତ ସ୍ୱରରେ କାରି କହିଲା, "ଯବନମାନେ କାହିଁ ନିଜ ଦେଶରେ ରହୁନାହାନ୍ତି ?"

ଏ କଥା ଶୁଣି ଅପ୍‌ପାର ଧୀର କଣ୍ଠରେ ତାକୁ ଜିଜ୍ଞାସିଲା, "ଆରେ, ତୋ ଶୁଆର କଣ ହେଲା କି ? ଆମକୁ କହୁନୁ କଣ ହେଲା ?"

କାରି ତମତମ ହୋଇ କହିଲା, "ତୁମର ଯବନ ବନ୍ଧୁ ମୋ ଶୁଆଟିକୁ ଛଡାଇନେଲା ପରା !"

ପିଲାମାନେ ସେଥା ମୁହଁକୁ ଚାହିଁଲେ । ଆଶ୍ଚର୍ଯ୍ୟ ହୋଇ ଇଳମ ପଚାରିଲା, "କେଉଁ ଯବନ ? ସେ କଣ ତୋଠୁଁ ଛଡ଼ାଇନେଲା ?"

ନାଲି ନାଲି ଆଖି ଦେଖାଇ କାରି କହିଲା, "ମୋ ବାପା ଲୋଭରେ ପଡ଼ି ମୋର ପୋଷା ଶୁଆଟାକୁ ବିକିଦେଲା ।"

ଏଥର ଅପ୍‌ପାର କହିଲା, "ଆଚ୍ଛା, ତୁ ସବୁ କଥା ଆମକୁ ମୂଳରୁ କହିଲୁ ।"

କାରି ଏଥର ନିରବଚ୍ଛିନ୍ନ ଭାବରେ ସବୁ କଥା ଗପିଗଲା, "ମୋ ଜୀବନର ଶେଷ ସୁଖ ଦିନ ଥିଲା—ଗତକାଲି । ବାଘ ଶିକାର କରି ବାପା ଠିକ୍ ଫେରିଥାନ୍ତି । ସେ ଭଲରେ ଫେରିଥିବାରୁ ମା ତାଙ୍କ ମାନସିକ ରଖିବାକୁ କାହକୁ ଖାଇବାକୁ ଦେଇଥାନ୍ତି । ଇଏ ତ ଶୁଆଙ୍କର ଚୁଆ ଫୁଟାଇବା ଦିନ । ନଗରରେ ବିକିବା ଲାଗି ମୁଁ ଆଠଟା ଶୁଆପିଲା ପାଳିଥାଏ । ସେ ଦିନ ଆମ ଗାଁକୁ ଲୁଣବେପାରୀ ଆସିଥିଲା । ପାହାଡ଼ି ଗାଁମାନଙ୍କରେ ଲୁଣ ଓ ଶୁଖୁଆ ବେପାର କରି ସେ ଫେରିଥାଏ । ଜଙ୍ଗଲୀ ଲୋକଙ୍କ ପାଖରୁ ମହୁ, ମହୁଫେଣା, ପଣସ ଓ ମିଠା ଫଳମୂଳ—ଏମିତି ବହୁତ ଦରବ ସେ ଆଣିଥାଏ ବେପାର ଲାଗି ।

"ସେ ବାପାଙ୍କୁ କହିଲା ଯେ ଗୋଟିଏ ଯବନଜାହାଜ ଏବେ ବନ୍ଦରକୁ ଆସିବ । ସେ କହିଲା, 'ତୁମେ ତ କେବେହେଲେ ସେଇ ମହାନ ନଗରୀଟି ଦେଖିନା । ବାଘଚମଲ ବିକିବା ପାଇଁ ବେପାରୀ ଲାଗି ଅପେକ୍ଷା ନକରି ତୁମେ ମୋ ସାଙ୍ଗରେ ନଗରକୁ ଚାଲ ।' ଏ କଥା ଶୁଣି ଆମେ ସାଙ୍ଗ ହୋଇ ବାହାରିଲୁ ।" ଏତିକି କହୁ କହୁ ତା କଣ୍ଠ ରୁଦ୍ଧ ହୋଇଗଲା । କୋହରେ ଟିକିଏ ଦମ୍ ମାରି ସେ କହିଲା, 'ଆମେ ନଗରୀରେ ପହଞ୍ଚି ଶୁଲ୍‌କ ଅଫିସ୍‌କୁ ଯାଇ ବାଘଚମଲ ବିକିବାର ବ୍ୟବସ୍ଥା କଲୁଁ । ବନ୍ଦରର ଜେଟିରେ ଅନେକ ନାବିକ ଥିଲେ—ଯବନ ଓ ଅନ୍ୟମାନେ ବି ।



"ସେମାନେ ମୋ' ହାତତିଆରି ପିଞ୍ଜରି ଓ ଶୁଆ କିଣିବାକୁ ବିଶେଷ ଆଗ୍ରହ କଲେ । ଏତିକିବେଳେ ଜଣେ ଯବନ ବେପାରୀ ଆମ ପାଖକୁ ଆସିଲା । ସେ ଗୋଟିଏ ମୋଟା ଜାମା ପିନ୍ଧିଥାଏ, ଆଉ ତା' ଅଣ୍ଟାରେ ଖଣ୍ଡେ ଚଦର ଗୁଡ଼ାଇଥାଏ । ଜଣାପଡ଼ୁଥିଲା ସେ ଧନୀଲୋକ ।"

କାରି ପୁଣି ଚୁପ୍ ହୋଇଗଲା । ତାକୁ ବୋଧ କରିବା ଲାଗି ପାରନାର କହିଲା, "ହଁ, ହଁ, ଯବନମାନେ ଅନେକ ପ୍ରକାର ଲୁଗା ଜାମା ପିନ୍ଧନ୍ତି । ବୋଧହୁଏ ତାଙ୍କ ଦେଶଟା ଶୀତଦେଶ ବୋଲି ବେଶୀ ଲୁଗା ଲୋଡ଼ା ହୁଏ । ସେଥିରେ ଆମ ଦେଶର ଲାଭ । ଆମଠାରୁ ସେମାନେ ଅଧିକ ଲୁଗା କିଣୁଛନ୍ତି ।"

ଟିକିଏ ରହି କାରି କହିଲା, "ମୋ ନିଜ ଶୁଆଟି ମୋ କାନ୍ଧରେ ବସି ଅଭିବାଦନ ଜଣାଉଥାଏ । ହଠାତ୍ ସେଇ ଦୁଷ୍ଟ ଯବନଟା ଆମ ପାଖକୁ ଆସିଲା । ସେ କହିଲା, 'ମୁଁ ଏଇ ଶୁଆଟି କିଣିବି ।' ମୋ ବାପା କହିଲେ, 'ସେଇଟା ତ ବିକା ହେବନାହିଁ । ସେଟାର ପରି ପିଞ୍ଜରି ନାହିଁ !' ସେ କହିଲା, 'ନାହିଁ, ନାହିଁ, ମୁଁ ସେଇଟାହିଁ ନେବି । ତାକୁ ଯେକୌଣସି ପିଞ୍ଜରିରେ ଭରତି କରି ଦେଉନା ! ମୋ ଦେଶର ଗୋଟିଏ ରୋଗିଣା ପିଲା ଲାଗି ମୁଁ ଏଇଟା ନେବି । ସେ ପିଲାଟି ବିଛଣାରୁ ଉଠିପାରୁନାହିଁ ପରା !"

"ଏ କଥା ଶୁଣି ମୁଁ ମୋ ଶୁଆ ମୋତିକୁ କାନ୍ଧରେ ବସାଇ ପଳାଇ ଯାଉ ଯାଉ କହୁଥାଏ— ନାହିଁ, ନାହିଁ ।"

"ଏହା ଦେଖି ସେଇ ଦୁଷ୍ଟ ଯବନଟା ଏପରି ଗୋଟାଏ ରୂପାର ମୁଦ୍ରା କାଢ଼ିଲା ଯେ, ମୁଁ କେବେ ସେମିତି ମୁଦ୍ରା ଦେଖିନଥିଲି । ମୋ ବାପା ତାହା ଦେଖି ସତେ କି ଲୋଭରେ ପାଗଳ ହୋଇଗଲେ ! ସେ ଗୋଟିଏ ପିଞ୍ଜରୀରୁ ଶୁଆଟି କାଢ଼ିଦେଇ ତା' ଭିତରେ ମୋ ମୋତିଟିକୁ ପୂରାଇ ସେଇ ବେପାରୀକୁ ଦେଇଦେଲେ । ମୋ ଶୁଆଟିକୁ ନେଇ ବେପାରୀ ଜଣକ ଚାଲିଯାଉଛି ଦେଖି ମୁଁ ତା' ପଛେ ପଛେ ପାଟିକରି ଧାଇଁଲି । ମୋ ବାପା କିନ୍ତୁ ମୋତେ ବାରଣ କଲେ । ସେ କହିଲେ, ମୋତେ ସେଠେଇ କିଣି-ଦେବେ । ମୁଁ କିନ୍ତୁ ତାଙ୍କ କଥା ନମାନି ସେତିକିବେଳୁ ବୁଲୁଛି । ମୋର ସେହି ପ୍ରିୟ ମୋତି କଥା ଖାଲି ମୋର ମନେପଡ଼ୁଛି ।"

ତାକୁ ସାନ୍ତ୍ୱନା ଦେବାଲାଗି ସେକାଳ ବହୁତ ବୁଝାଇ କହିଲା, "ସେଇ ଯବନ ବେପାରୀ ତାକୁ ଖୁବ୍ ଆଦରରେ ରଖିବ ଯେ ! ମୁଁ ଦେଖିଛି ଆମ କାରିଗରମାନେ ରୁପା ତାର ପିଞ୍ଜରୀ କରି ସେଥିରେ ହୀରାଦାନ୍ତ ଓ କଇଁଛ ଖୋଲର ନକ୍ସା କାମ ଲଗାଇଥାନ୍ତି । ଏସବୁ ଦାମିକା ପିଞ୍ଜରୀ ଖାଲି ଧନୀ ଯବନମାନେ କିଣନ୍ତି ।"

ଏ କଥା ଶୁଣି କାଶି କହିଲା, "ମୋ ମୋତିର ରୁପା ପିଞ୍ଜରୀ ଲୋଡ଼ା ନାହିଁ । ସେ ମୋରି କାନ୍ଧରେ ବସିଲେ ଖୁସି ।"

ସନ୍ତାନ ପଚାରିଲା, "ଏ ଘଟଣା କେତେବେଳେ ଘଟିଲା ?"

କାଶି କହିଲା, "ଆଜି ସକାଳରୁ ପରା ! ସେଇ ଲୁଣ-ବେପାରୀର ଶଗଡ଼ ନଯାଏ କି ଆମେ ସହରକୁ





ନଆସୁ । ଏଠିକି ଆସି ସେ ଯବନଙ୍କୁ ନ ଭେଟିଥିଲେ ବାପା ଏପରି ଜେଲରେ ପାଗଳ ବି ହୋଇ ନଥାନ୍ତେ । ସେଇ ରୁପାମୁଦ୍ରାଟା ତ କାମୁଡ଼ି ଖାଇଦେବ ନାହିଁ—ତେବେ କଅଁ…?"

ସ୍ଲିମ୍ବର ଧୀରେ ଧୀରେ ପଚାରିଲା, "ହଇରେ, ତୁ ସକାଳୁ ଝାଉଳିଲୁଣି ?"

ସେ କହିଲା, "ମୋ ଭୁଡ଼ଟା କରଡ଼ ହୋଇଯାଉଛି—ଆଉ ମୁଁ ଖାଇବ ! ମୋ ମୋଢ଼ କଣ ଖାଇବଣି, କହିଲୁ ଭଲା ?"

ସାଦୁବନ ତାକୁ ବୁଝାଇ କହିଲା, "ପୋଷା ଶୁଅଙ୍କୁ ଖୋଇବାଲାଗି ନାବିକମାନେ ଅନେକ ପ୍ରକାର ବାଦାମ, ଶସ୍ୟର ମଞ୍ଜି ଆଦି ରଖିଥାନ୍ତି । ତୋର ମୋଢ଼ ନିଷ୍ଟେ ବଢ଼ିଆ ଖାଉଥିବ । ନେ କାଶ, ତୁ ଏ ମିଠେଇ ଦଟା ଖାଇଲୁ !"

ସେ କହିଲା, "ଧନ୍ୟବାଦ ସାଦୁବନ, କିନ୍ତୁ ମୁଁ ଟିକେ ମୋଟେ ତୋଷ ପାଉନାହିଁ । ଏଥରୁ ମୁଁ ନଦୀକୂଳକୁ ଯାଇ ଦେଖିବି ମୋ ମୋଢ଼ କେଉଁ ଦରିଆପାରିକି ଗ୍ଲାସିବ । ମୁଁ ସକାଳୁ ହେଠିନ୍‌ବେଳକୁ ସେ ମୋତେ ଡାକୁ ନଥିବ, ଏକଥା ତ ମୁଁ ଭାବିପାରୁନାହିଁ । ଯଦି କେହି ଜାହାଜିଆ ଗୋଟାଏ ବଳୁଆ ଟୋକା ଖୋଜୁଥିବ, ତେବେ ମୁଁ ବି ଦରିଆପାରିକି ଗ୍ଲାସିବ । ଜଙ୍ଗଲରେ ଆଉ ଗଛରେ ନ ଚଢ଼ି ମୁଁ ଏଣିକି ଜାହାଜର ମାସ୍ତୁଲରେ ଚଢ଼ିବି । ବାପା ସେତେବେଳେ ନିଜେ ଶୁଆ ଧରିବେ । ତେବେ ଯିନା ସେ ବୁଝିବେ !"

ସ୍ଲିମ୍ବର ଅତି କଅଁଳେଇ କରି କହିଲା, "ମୋତେ ସାଙ୍ଗରେ ନନେଲେ ମୁଁ ତୋତେ ଭିଣ୍ଡିଧରିବ ଯେ !"

ଜାହାଜ ଓ ଜାହାଜପଥ—

ପାରକାର ଜାହାଜ କାପ୍ତାନଙ୍କ ପୁଅ ରାହୁଲକୁ ପଚାରିଲା, "ଆଚ୍ଛା, ତୁ କ'ଣ କହି ପାରିବୁ କାହିଁକି ଏଇ ବିଦେଶୀ ବଣିକମାନେ ଆମ ତାମିଲ୍ ଦେଶକୁ ଆସନ୍ତି ?"

ରାହୁଲ କହିଲା, "ଆମ ଦେଶର ଉଦନଜଣଯାକ ମହାରାଜାଙ୍କ ରାଜ୍ୟ ସହିତ ଯବନ ବେପାରୀମାନେ କାରବାର କରନ୍ତି । ଚେର୍ ଦେଶର ବନ୍ଦର ମୁଜିରସ୍ ତାଙ୍କ ଯିବା-ଆସିବା ବାଟରେ ପଡ଼େ । ଯବନମାନେ ସେଠାକୁ ଯାଆନ୍ତି ଗୋଲ୍‌ମରିଚ ଲାଗି । ତାଙ୍କ ବେପାରର ଅଧାରୁ ବେଶୀ ଏଇ ଗୋଲ୍‌ମରିଚ । ପାଣ୍ଡ୍ୟ ଦେଶର କୋରକାଇ ବା କୋଲ୍‌କାଇକୁ ସେମାନେ ଯାଆନ୍ତି ମୁକ୍ତା, ମୁକ୍ତା-ଶାମୁକା ଓ ଶଙ୍ଖ ଲାଗି । ମୁକ୍ତାରେ ତିଆରି ହୁଏ ସବୁଠାରୁ ଉତ୍ତମ ଅଳଙ୍କାର ।"

ଏଥର କହିବା ପାଳି ହାଦୁବନର—"ଆମ ତାମିଲ ଦେଶର ଭଲ ଭଲ ଦରବ ଲାଗି ଯବନଙ୍କ ବହୁତ ଆଗ୍ରହ । ପୂର୍ବ ଓ ପଶ୍ଚିମ ଦେଶର ଠିକ୍ ମଝିଭାଗରେ ଦେଶର ଉପକୂଳଟି ଅବସ୍ଥିତ ହୋଇଥିବାରୁ ଏଠାରୁ ମାଲ କିଣାବିକା ତାଙ୍କୁ ସହଜ । ଆମ ଦେଶର ପ୍ରଧାନ ରପ୍ତାନି ହେଲା ସୂକ୍ଷ୍ମ ମସଲିନ୍ ଲୁଗା । ଆମ କପା ଗଛକୁ ଯବନ କହନ୍ତି 'ପଶମ-ଗଛ'; କାହିଁକି ନା, କପାଗଛ ସେ ଦେଶରେ ନାହିଁ । ଏହି ବେପାର ଅତି ଲାଭଜନକ । ତେଣୁ ଆମ ନିଜ ଦେଶର ମାଲ୍ ଛଡ଼ା ଏଠା ବେପାରୀ ପୂର୍ବ ଦେଶର ଦ୍ୱୀପରୁ ଗୋଲମରିଚ, ମସଲପାତି ଓ କଇଁଛ ଖୋଳ ନେଇ ଆସନ୍ତି । ଉତ୍ତର ଦେଶରୁ ଆଣନ୍ତି ଆଉ ମଣି-ମୁକ୍ତା ଅଣନ୍ତି । ଏସବୁ ସେମାନେ ସେଇ ଯବନ ବେପାରୀଙ୍କୁ ବିକନ୍ତି ।"

ସେଙ୍କାନ କହିଲା, "ଆମର ଏଇ କାବେରୀପଟ୍ଟିନମ୍‌ରେ ଏତେ ବେଶୀ ଯବନ ଆଉ ବିଦେଶୀ ଲୋକ ରହୁଥିଲେ ଯେ ମୋ ବାପା କହୁଥିଲେ ଯେ, ଆମ୍ଭର ଉତ୍ତରରେ ସୌନ୍ଦୁରେଠାରେ ଯବନମାନେ ନିଜର ଅଲଗା ବସତି ବସାଇଛନ୍ତି । ସେଠି ତାଙ୍କର ଘରଦ୍ୱାର ଆଉ ବନ୍ଦରଘାଟ ବି ବସିଛି । ସେ ବନ୍ଦରଟି ଅତି ଶାନ୍ତ; ତେଣୁ ବର୍ଷକ ମଧ୍ୟରେ ତାଙ୍କ ଜାହାଜ ଅନେକ ଥର ଯା-ଆସ କରେ ।"

କାର ହଠାତ୍ ଚିହାଇ ପଚାରିଲା, "ଏଇ ଅସୁର-ପ୍ରକୃତିର ଯବନମାନେ କ'ଣ ଆମେ ଭାତ ଖାଇଲା ପରି ଖାଲି ଗୋଲମରିଚଗୁଣ୍ଡା ଖାଆନ୍ତି କି ?"

ପାରକାର କହିଲା, "ତାଙ୍କ ଖାଦ୍ୟଦ୍ରବ୍ୟଗୁଡ଼ିକ ନିଶ୍ଚେ ଖୁବ୍ ପାଣିଚିଆ ହୋଇଥିବ । ନ ହେଲେ ସେମାନେ ସେଥିରେ ଗୋଲମରିଚ ପକାଇ ସୁଆଦିଆ କରିବାକୁ ଚାହାନ୍ତି କାହିଁକି ?"



ଇଲ୍ଲମ୍‌ କହିଲା, "ଆମ ଗରିବ ଲୋକଙ୍କ ଜାହାଜରେ ଟିକିଏ ଗୋଲମରିଚ ପଠାଇଲେ ତାହା ସୁଆଦିଆ ହୋଇଯାଏ । ଏ ବିଦେଶୀ ବେପାରୀ ଯଦି ଏତେ ଗୋଲମରିଚ ନେଇ ପଳାଇବେ, ତେବେ ଆମ ଦେଶରେ ଆଉ ରହିବ କ'ଣ ?"

ସତ୍ୱନ ସମସ୍ତଙ୍କୁ ବୁଝାଇଦେଲା, "ଆମ ତାମିଲ ଦେଶରେ ଗୋଲମରିଚ ଫଳେ ବହୁତ । ଯବନମାନେ ଅସଲରେ ଖୋଜନ୍ତି ଧଳା ଗୋଲମରିଚ । ଏ ଦେଶର କାରିଗର ଘରମାନଙ୍କରେ ଧଳା ଗୋଲମରିଚ ବେଶୀ ଲୋଡ଼ା ହୁଏ ନାହିଁ ।"

କାରି ପୁଣି ଥଟ୍ଟା କରି କହିଲା, "ଏ ଯବନଗୁଡ଼ାକ କ'ଣ ନିଜଲାଗି କିଛି ତିଆରନ୍ତି ନାହିଁ ?"

ସେକାନ କହିଲା, "ଯବନମାନେ ବଡ଼କୋଟିର କାରିଗର । ଆମ ରାଜାଙ୍କ ନଗର ଲାଗି ସବୁ ସେମାନେ ବଡ଼ସରୁ ତିଆରି କରିଛନ୍ତି ! ପୁଣି ପୁହାରର ରାଜଉଦ୍ୟାନର ସନ୍ଧିଗୃହଟି ଯବନଦେଶୀ ବଢ଼େଇମାନେ ଅତି ସୁନ୍ଦରଭାବେ ସଜାଇଛନ୍ତି ।"

ରାହୁଲ କହିଲା, "ସେମାନେ ଖୁବ ଭଲ ଜାହାଜ ମଧ୍ୟ ଗଢ଼ନ୍ତି । ସମୁଦ୍ରରେ ଯାତ୍ରୀ-ଜାହାଜର ଧାଡ଼ି ଲାଗିଥାଏ ପୌଦ୍ଧକେ ପଟେ ।"

ପାରନାର୍ ପଚାରିଲା, "ଆମ ଜାହାଜଗୁଡ଼ା କେଡ଼େ କେଡ଼େ ! ସେଥିରେ କେତେ ଲୋକ ଯାଇପାରିବେ ?"

ବିହୁଲ ଉତ୍ତର ଦେଲା, "ଦୂରଗାମୀ ଜାହାଜଗୁଡ଼ିକ ଖୁବ ବଡ଼ ହୁଏ । ସେଥିରେ ନାବିକ ଓ ବେପାରୀ ଯାତ୍ରୀଙ୍କୁ ମିଶାଇ ଦୁଇ ଶହ ଅଥବା ଆହୁରି ଅଧିକ ଲୋକ ଯାଇପାରନ୍ତି । ଯାତ୍ରୀଙ୍କ ଛଡ଼ା ସେଇ ଜାହାଜ ପାଞ୍ଚ ଶହ ଶଗଡ଼ ମାଲ୍ ଅଥବା ବଡ଼ ବଡ଼ କାଠଗଣ୍ଡି ମଧ୍ୟ ନିଅନ୍ତି । ଏପରିକି ବୋଇତ ଛଡ଼ା ଯାତ୍ରୀଙ୍କ ବ୍ୟବହାର ଲାଗି ପିଇବା ପାଣି ଆଉ ଖାଦ୍ୟ ମଧ୍ୟ ଏଇ ଜାହାଜରେ ନେବାକୁ ପଡ଼େ । ସମୁଦ୍ର କୂଳରେ ଚାଲୁଥିବା ଜାହାଜଗୁଡ଼ିକ ଦୂରଗାମୀ ଜାହାଜ ଅପେକ୍ଷା ସାନ । ବଡ଼ ଜାହାଜଗୁଡ଼ିକରେ ଏମୁଣ୍ଡରୁ ସେମୁଣ୍ଡଯାଏ ଯାତ୍ରୀ-କୋଠରି ମାଳାପରି ଲମ୍ବି ଥାଏ । ଜାହାଜର ମଙ୍ଗଟା ହାତୀମୁଣ୍ଡ, ମଇଁଷି ମୁଣ୍ଡ, ଶୁଆ କି ବଣ-କୁକୁଡ଼ାର ମୁଣ୍ଡ ଆକାରରେ ଗଢ଼ାହୁଏ । ଅତି ଉଚ ଉଚ ମାସ୍ତୁଲରେ ବଡ଼ ବଡ଼ ପାଲ ଟଙ୍ଗାଯାଇ ପବନବଳରେ ଜାହାଜ ଚାଲେ । କିନ୍ତୁ ତୋଫାନ ଆସିଲେ ଜାହାଜ ଅଚଳ ହୁଏ । ପବନ ବନ୍ଦ ହୋଇ ପଡ଼ଯାଏ, ତେବେ ବି ଜାହାଜକୁ ଖୁବ ଅସୁବିଧା ।"

ପେକାନ କହିଲା, "[illegible] ଜାହାଜମାନଙ୍କ ଲାଗି ସବୁପ୍ରକାର ମରାମତି ବ୍ୟବସ୍ଥା କରନ୍ତି ରାଜାଙ୍କ ନୌବହରର ଅଧିକର୍ତ୍ତା । କିନ୍ତୁ ମଝିଦରିଆରେ ଜାହାଜ ଯଦି ଭାଙ୍ଗିଯାଏ ତେବେ ତା'ଲାଗି ସାହାଯ୍ୟ ପ୍ରାପ୍ତି ସମ୍ଭବପର ନାହିଁ ।

"ଏହି ଜାହାଜର ମାସ୍ତୁଲ ଆଉ ପାଲ ତୋଫାନ ଓ ସମୁଦ୍ର ଲହଡ଼ି ଦାଉରେ ନଷ୍ଟ ହୋଇଯାଏ । ଏତେ ବିପଦ ଥିଲେ ବି ଆମର ଏ କଳିଙ୍ଗଦେଶୀୟ ଜାହାଜ ବରାବର ଦରିଆର ଏପାଖ ସେପାଖ ଯା-ଆସ କରନ୍ତି । ଆରବ ଓ ଯବନ ଜାହାଜ ମଧ୍ୟ ଦରିଆ ପାରି ହୁଅନ୍ତି ।"



ଦୟାନ ପଚାରିଲା, "ଆଚ୍ଛା, ଅତଳ ସମୁଦ୍ର ଭିତରେ ନାବିକମାନେ କିମିତି ବାଟ ଜାଣିପାରନ୍ତି ଟିକିଏ କହିବୁ କି ?"

ରାହୁଲ କହିଲା, "ଦରିଆ ବୁକୁରେ ଯେଉଁ ପବନ ବହେ, ତା'ର ବହୁତ ଗୋପନ ରହସ୍ୟ ଅଛି । ନାବିକମାନେ ତାହାରୁ କିଛି କିଛି ଶିଖିପାରିଛନ୍ତି । ବିଭିନ୍ନ ଋତୁରେ ପବନର ଗତି ବିଭିନ୍ନ ପ୍ରକାର ହୁଏ । ଗୋଟିଏ ଋତୁରେ ଗୋଟିଏ ଦିଗକୁ ପବନ ବହୁଥିଲେ ଅନ୍ୟ ଋତୁରେ ଠିକ୍ ବିପରୀତ ଦିଗକୁ ପବନ ବହେ । ଏହି ପବନର ସାହାଯ୍ୟ ନେଇ ନାବିକମାନେ ଦରିଆ ବୁକୁରେ ଜାହାଜ ପାରିକରନ୍ତି ।"

ନଗରବାସୀ ଭଲମ କହିପକାଇଲା, "ସାଦୁବନର ବାପା ସମୁଦ୍ରଯାତ୍ରା ସମୟରେ ଯେଉଁ ବିପଦ ଆଉ କଷ୍ଟ ସହ୍ୟ କରନ୍ତି, ସେ କଥା ଭାବି ମୋର ଛାତି ଥରୁଛି ।"

ହାଦୁବନ କହିଲା, "ଅରେ ଆମଙ୍କ ଜୀବନହିଁ ଏହିପରି । ଗାଁ ଗହଳିରେ ଗୋରୁଖିଆ ବାଘ ଆଉ ଚିତାବାଘ ସାଙ୍ଗରେ ଲଢ଼ି ତା ଗୋରୁପଲକୁ ରକ୍ଷା କରୁ କରୁ ବେଳେ ବେଳେ ସେ ମରେ ବା ଆହତ ହୁଏ—ସେକଥା ଭାବିଲେ ! ପ୍ରତ୍ୟେକ ଗାଁରେ ଗୋଟିଏ ଗୋଟିଏ 'ବେଣ୍ଟକଲ' ବା ଶିକାରପୂଜା ସମୟରେ ଗାଁ ମଣ୍ଡପେ ଯାଇ ପୂଜା ଦିଅନ୍ତି କିମିତି ତାଙ୍କ ସ୍ୱାମୀ ପୁଅ ଆଉ ନିରାପଦରେ ଘରକୁ ଫେରିବେ । ମୁକ୍ତାସନ୍ଧାନୀ ବିଦେଶ—ସାଗର ତଳ ମୃତ୍ୟୁ ସହିତ ଲଢ଼େଇ ତା'ର ଏ ଜୀବନ । ଏଇ ନାଗର ବାପାଙ୍କ କଥା ଦେଖ ! ବାଘ ଆଉ ହାତୀ ଶିକାର କଲାବେଳେ ତାଙ୍କୁ କେତେ ବିପଦ ସହିତ ଲଢ଼ିବାକୁ ପଡ଼େ । ଏପରି କାହିଁ କି ଜାଣେ ଯେ ଶୁଆ ବସାର କୋରଡ଼ରେ ହାତ ପୁରାଇଲାବେଳକୁ ବିରାଟ ଫଣା ମେଲି ନାଗସାପ ଆକ୍ରମଣ କରିପାରେ ।" ନାଗ କାଳେ ବିପଦ କଥା କହି ତାକୁ ସମର୍ଥନ କରିବ ବୋଲି ସେ ତା'ଆଡ଼କୁ ଚାହିଁଲା; ନାଗ କିନ୍ତୁ ପୂର୍ବପରି ଗମ୍ଭୀର ହୋଇ ରହିଲା ।



ସମ୍ରାଟ ମନ୍ତବ୍ୟ କଲେ, "ନଗରୀର ଧନ ବଢ଼ି ବଢ଼ି ଚାଲିଛି । ଯବନ ଦେଶର ସୁନାରେ ଆମ ରାଜକୋଷ ପୂର୍ଣ୍ଣ ହେଉଛି ।" ଆଉ ସମସ୍ତେ ତା' କଥାରେ ମୁଣ୍ଡ ଝୁଙ୍କାଇ ସମ୍ମତି ଜଣାଇଲେ ।

କାଳି ଆହତ କଣ୍ଠରେ କହିଲା, "ଆଚ୍ଛା, ଆମ ମହାରାଜା ଏତେ ସୁନା ନେଇ କି କାମରେ ଲଗାଉଛନ୍ତି । ସେଥିରେ ଆମର କି ଉପକାର ହେଉଛି ?"

ବହୁ କଷ୍ଟରେ ଏ ପ୍ରଶ୍ନର ଉତ୍ତର ମିଳିଲା—"ରାଜାଙ୍କ ପ୍ରଥମ କର୍ତ୍ତବ୍ୟ ହେଲା, ରାଜ୍ୟ ରକ୍ଷା କରିବା । ଅନ୍ୟ ରାଜାଙ୍କ ଆକ୍ରମଣରୁ ବା ଜଙ୍ଗଲୀ ଜାତି ଓ ଚୋରଙ୍କ ହାତରୁ ସେ ନିଜ ରାଜ୍ୟକୁ ରକ୍ଷା କରନ୍ତି । ଏଇ କାମପାଇଁ ସେ ଗୋଟିଏ ବଡ଼ୁଆ ସୈନ୍ୟବାହିନୀ ପୋଷନ୍ତି । ରାଜା ହେଲେ ନର୍ତ୍ତକ, ଗାୟକ ଓ କବିମାନଙ୍କର ଅନ୍ନଦାତା । ଫଳଗଛରେ ଶୁଆପଲ ପଡ଼ିଲା ପରି ଏସବୁ ଶିଳ୍ପୀଙ୍କ ଧାଡ଼ି ଲାଗିଥାଏ ରାଜଦ୍ୱାରକୁ । ସାଧୁସନ୍ଥ ବା ପଣ୍ଡିତମାନଙ୍କୁ ମଧ୍ୟ ରାଜା ତାଙ୍କ ରାଜଉଦ୍ୟାନ ଗୃହମାନଙ୍କରେ ଆଶ୍ରୟ ଦେଇ ବସାଇ ରଖନ୍ତି । ଦେଶର ପର୍ବପର୍ବାଣୀ, କୁସ୍ତି କସରତ, ଲଢ଼େଇ ଅବସରେ ବି ରାଜା ହେଲେ ପ୍ରଧାନ ଦାତା ।"

ତେବେ ବି କ୍ଷୁବ୍ଧ କଣ୍ଠରେ କାଳି କହିଲା, "ଚାଷୀ, ଗୋପାଳ ବା ଶିକାରୀଙ୍କ କଥା ଭୁଲିଗଲେ ?"

ସମ୍ରାଟ କହିଲେ, "ଜଣେ ଭଲ ରାଜା ଦେଶର ଖାଦ୍ୟ ଉତ୍ପାଦନକୁ କେବେହେଲେ ହେଳା କରେନାହିଁ । ଦେଶରେ ଜଳାଶୟ ଖୋଳାଇ ତା'ର ବନ୍ଧବାଡ଼ ଠିକ୍ ରଖାଇବା, ଜଙ୍ଗଲ ସଫା କରି ଅଧିକ ଚାଷଜମି ତିଆରିବା, ଆଉ ସବୁ କାମଲାଗି ହାତହତିଆର ଯୋଗାଇବା ବ୍ୟବସ୍ଥା ସେ ନିଶ୍ଚେ କରିଥାନ୍ତି ।"

ଏଥର ତାଙ୍କ ବୈଠକଟି ଭାଙ୍ଗିଲା । ସାହୁଭର ଉଠିପଡ଼ି କାନ୍ଧରେ ହାତପକାଇ କହିଲା, "କାଳିକୁ ମୁଁ ମୋ ମା'ଙ୍କ ପାଖକୁ ଟିକିଏ ନେଇଯିବି ।" ବୁଲିପଡ଼ି ସେ କାଳିକୁ କହିଲା, "ଆମ ବାରିରେ ଯେଉଁ ନୂଆ ଗଛଟି ଏବେ ମା' ଲଗାଇଛନ୍ତି ସେଠିକି କି ଜାତିର ଚଢ଼େଇ ଆସନ୍ତି, ତାହା ଜାଣିବାଲାଗି ପରା ମା' ତୋତେ ଖୋଜୁଥିଲେ ।"

କାଲୁ ଦେଖିଲା ତା' ସାଥୀମାନେ ତାକୁ ସାଙ୍ଗରେ ଧରି ନଗ୍ରାକୂଳ ସହରବାଟେ ରାଜଧାନୀକୁ ଚାଲିଲେ । ସେମାନେ ବଜାର ବାଟରେ ସାନ୍ଧ୍ୟ ଭିତରକୁ ଗଲେ । ପଣ୍ଡିତମାନଙ୍କ ଘରଘର ଆଉ ଉଦ୍ୟାନ ବାଟିକା ପାଖରେ ଗୋଟିଏ ସୁନ୍ଦର ଘର ହେଲା ସ୍ୱଣ୍ଣୁଭରର ବାପାଙ୍କର । ଘରଟି କାଠରେ ତିଆରି । ତାଙ୍କ ଘରର ଜାଲିଦାର ଝରକାରେ ମୃଗନୟନପରି କଣା କରାଯାଇଛି । ସିଂହଦୁଆରର କବାଟରେ ଅତି ସୂକ୍ଷ୍ମ କମଳୁଟ ହୋଇଛି । କାଲୁକୁ ଅଳ୍ପ ସମୟ ଅପେକ୍ଷା କରିବାକୁ କହି ସ୍ୱଣ୍ଣୁଭର ଭିତରପଟକୁ ଆଗେଇଗଲା ।

ଅତି ଅଳ୍ପ ସମୟ ମଧ୍ୟରେ ତା'ର ମା' କଥାଟା ବୁଝିଗଲେ । ସେ ତରବର ହୋଇ ବାହାରି ଆସି କାଲୁର ହାତ ଧରିପକାଇଲେ । କାଲୁ ନମ୍ରସ୍ୱରରେ କହିଲା, "ଆଜ୍ଞା, ମୁଁ ଆଗ ଟିକିଏ ଧୂଆଧୋଇ ହୁଅନ୍ତି ।"

ତା' କଥା ଶୁଣି ସ୍ୱଣ୍ଣୁଭରର ମା' ଖୁସି ହେଲେ । ତହୁଁ ସେମାନେ ଘରର ପଛପଟକୁ ଗଲେ । ସେଠାରେ ଗୋଟିଏ ବଡ଼ କଳା-ନାଲି ଚଉଚଉକା ମାଟିଘୂମରେ ପାଣି ଥାଏ । ହାତଗୋଡ଼ ଧୋଇବା ପରେ କାଲୁର ମନେହେଲା, ତା' ମନର ବେଦନା ମଧ୍ୟ କିଛି ଊଣା ପଡ଼ିଲା ।

ଏହାପରେ ସ୍ୱଣ୍ଣୁଭରର ମା' ସେ ଦୁହିଙ୍କୁ ସାଙ୍ଗରେ ନେଇଯାଇ ଦାଣ୍ଡପଟ ବଗିଚ୍ଛରେ ଗୋଟିଏ କାଠ ଖଟୁଲିରେ ବସାଇଲେ । ଖଟୁଲିର ଗୁବ୍ରଗୁଡ଼ିକରେ ମୁକ୍ତାଖୋଳ, ଶାମୁକା ଓ କଉଡ଼ି ଖୋଳପା ଦେଇ ନକ୍ସାକାମ ହୋଇଥାଏ । ଆଗରୁ ସେଠି ଦୁଇଟି ପାଟରେ ତାଙ୍କ



ଲଗି ଘୋଳଦହି ବଢ଼ା ହୋଇଥାଏ । କାଉ ଅତି ଆନନ୍ଦରେ ସେତକ ପିଇଲା—ପାଖରେ ଥିବା ପାଚିଲା କଦଳୀ ବି ଖାଇଲା ।

ଖିଆ ସରିବାରୁ ସେମାନେ ମୁହଁ ଧୋଇ ଆସି ଏରୁଣ୍ଡି ପାଖରେ ବସିଲେ । ସଞ୍ଜୁଭରର ମା' ଧୀରେ ଧୀରେ ତାକୁ ବୁଝାଉଥାନ୍ତି । ତାଙ୍କ ହାତଟି ଥାଏ କାଉ କାନ୍ଧରେ । ସେ କହିଲେ, "କାଉ, ତୁ ଏମିତି ମନଦୁଃଖ କଲେ ଚଳିବ ? ମୁଁ ଜାଣେ, ଯବନ ବେପାରୀମାନେ ପୋଷା ଶୁଆଙ୍କୁ ଖରି ଖୁଣ୍ଟି ପାଆନ୍ତି, ସୁନା ପଞ୍ଜୁରୀରେ ଖୁଆନ୍ତି । ତାଙ୍କ ଦେଶର କବି ଆମ ଦେଶର ଶୁଆପକ୍ଷୀ ଲାଗି ଯେଉଁ କବିତା ଲେଖିଛି, ଜଣେ ଯବନ ବେପାରୀ ପରା ସେ କବିତା ମୋତେ ଶୁଣାଇଥିଲା !"

କାଉ କହିଲା, "ସେ ମୋ ପୋଷା ଶୁଆଟାକୁ ନେଲା କାହିଁକି ? ସେ ତ ଆଉ ଛଅଟା ବଢ଼ିଆ ଶୁଆ କିଣିପାରିଥାଆନ୍ତା ।"

ଭଦ୍ରମହିଳା ତାକୁ ବୁଝାଇଲେ, "ଆରେ, ତୋର ସେ ଶୁଆକୁ ପରା ତୁ ଅତି ମଧୁର କଥା ଶିଖାଇଥିଲୁ ! ସେଥିପାଇଁ ସେ ତାର ରୋଗିଣା ପିଲା ଲାଗି ତାକୁ ନେଇଗଲା ।"

ତେବେ ବି କାଉ ପ୍ରତିବାଦ କହିଲା, "ମୋ ଶୁଆ ତ ମୋ ଭାଷାରେ କଥା କହିବ । ତା' କଥା ସେ ଯବନ ପିଲା କଣ ବୁଝିବ ?"

ମହିଳା କହିଲେ, "ଯେଉଁ ଶୁଆ ଥରେ ମଣିଷବୋଲି ଶିଖିଯାଏ, ସେ ଅତି ଶୀଘ୍ର ଅନ୍ୟ ଭାଷା ମଧ୍ୟ ଶିଖିପାରେ ।"

କାଉ ପୁଣି ବିରକ୍ତ ହୋଇ କହିଲା, "ତେବେ ମୋ ଶୁଆ ମୋଟା ଯବନପିଲା ପାଖରେ କଥା କହିବାକୁ ଶିଖିଲେ ତା' ମନଟା ଆନନ୍ଦ ହେବ; କିନ୍ତୁ ମୋ ମନ ତ ଖୁସି ହେବ ନାହିଁ ।"

ମହିଳାଟି ପୁଣି ତାକୁ ବୁଝାଇଲେ, "ତୁ କାହିଁକି ଭୁଲିଯାଉଛୁ ଯେ ସେ ପିଲାଟି ରୋଗରେ ବିଛଣାରେ ପଡ଼ିଛି । ସେ ତୋପରି ଜଙ୍ଗଲରେ ବୁଲୁନି, ଗଛରେ ଚଢ଼ୁନି କି ଚଢ଼େଇ ପାଳିପାରୁନି ।" କାଉ ଅଳ୍ପ ସମୟ ଗମ୍ଭୀର ହୋଇ ବସିରହିଲା । ସେ ପୁଣି କହିଲା, "ଜାଣିଛ ନା, ମୋ ବାପା ମୋ ଶୁଆଟି ବିକିଦେଲେ ଗୋଟିଏ ରୁପାମୁଦ୍ରା ଲୋଭରେ । ରୁପା କ'ଣ କାମରେ ଲାଗିବ, କହିଲ ଭଲା ?"

ମହିଳାଟି ତାକୁ ବୁଝାଇବାରେ ଲାଗିଥାନ୍ତି—"ତୁ ଆଉ ବାପାଙ୍କ ଉପରେ ଏପରି ରାଗିଲେ ହେବ ନାହିଁ । ତୁ ଏଇଠି ମୋ ପାଖେ ବସ । ମୁଁ ତୋ ପାଇଁ ସଞ୍ଜୁଭରକୁ ଗୋଟିଏ କାମରେ ପଠାଉଛି । ତୋ ମନଖୁସି ଲାଗି ମୁଁ ଗୋଟେ ଗୀତ ବୋଲୁଛି ।" ସଞ୍ଜୁଭରର ମା ପୁଅକୁ ପଠାଇଲେ କାଉର ବାପାଙ୍କୁ ଡାକିଆଣିବାକୁ । ସେ କାଉ ବାପାଙ୍କୁ କାଉ ପରି ମନ ଦୁଃଖରେ ନଦୀବାଲିରେ ବୁଲୁଥିବାର ଦେଖିଥିଲା ବୋଲି କହିଲା ।

ମହିଳାଟି ତାଙ୍କ ବୀଣା ଯନ୍ତ୍ର ଆଣି ତାରରେ ଧୀରେ ଝଙ୍କାର ଦେଲେ । ତା'ପରେ ସେ ଶୁଆ ବିଷୟରେ ଗୋଟିଏ ଗୀତ ବୋଲିଲେ । ଗୀତ ଶୁଣିବାପରେ କାଉର ରାଗ ଉଭେଇ ଗଲା । ସେ ହସିଲା ମୃଦୁ ମଧୁର ହସ ।



ଜଣେ ବଳିଷ୍ଠ କଳାଲୋକ ନଦୀ-ବାଲିରେ ଗମ୍ଭୀର ସ୍ୱରରେ କଣ ଖୋଜି ଖୋଜି ବୁଲୁଥିଲା । ଏତିକିବେଳେ ଫୁଲମାଳ ପିନ୍ଧି ଜଣେ ତରୁଣ ତା' ହାତରେ ହାତ ମାରି ତାକୁ ଡାକିଲା । ସ୍ମିତ ଭରି ପଚାରିଲା, "ତୁମେ ବୋଧହୁଏ କାହାକୁ ଖୋଜୁଛ ? ସେ ଆମ ଘରେ ବସିଛି । ତା'ର ଶୁଆ ବନ୍ଦୀ ହୋଇଛି ବୋଲି ତା'ର ସାରା ମନ କଷ୍ଟ । ତାକୁଇ ଭୁଲାଇବାକୁ ମୋ ମା' ଗୀତ ବୋଲି ଶୁଣାଉଛନ୍ତି ।"

ସେ ଶିକାରୀ କହିଲା, "ଗୋଟିଏ ଜଙ୍ଗଲ ଶୁଆଲାଗି ଗୋଟିଏ ରୂପାମୁଦ୍ରା ପାଇବାକୁ ମୁଁ ବାଧ୍ୟରେ ଶୁଆଟି ଦେଇଦେଲି ! ସେଇ ମୁଦ୍ରାଟି ପାଇବାକୁ ମୁଁ ଦୁର୍ଭିକ୍ଷ ବର୍ଷରେ ଅନାହାରରୁ ସମସ୍ତଙ୍କୁ ବଞ୍ଚାଇ ପାରିବି । କିନ୍ତୁ ମୁଁ ଧନ ନେଇ କଣ କରିବ ଯଦି ତା' ମା ପାଖକୁ ତାକୁ ଫେରାଇ ନ ହବ ।"

"ଏଇ ଦରିଆକୂଳ ସହରର ବଡ଼ ବଡ଼ ଜାହାଜ ଆଉ ପଣ ପଣ ବିଦେଶୀ ସ୍ତ୍ରୀ ଲୋକ ମୋତେ ବାସ୍ତା କରିପାରିଲେନି । ଏ ଢେଉର ଗର୍ଜନରେ ମୋ କାନ ଅତଡ଼ା ପଡ଼ୁଛି ।"

ସ୍ମିତ ଭରି ତାଙ୍କୁ ଆଶ୍ୱାସନା ଦେଇ କହିଲା, "ମୋ ମା କାହାକୁ ବୁଝାଇ ତୁମ ସଙ୍ଗରେ ଘରକୁ ପଠାଇଦେବେ ଯେ ! ତୁମେ ଏବେ ମୋ ସାଙ୍ଗରେ ଆସ । ତୁମ ବାଉଁଶବଣ-ଘେରା ଗାଁକୁ ଫେରିବା ପୂର୍ବରୁ ତୁମେ ଦୁଇ ଜଣ ଭଲ ଖାଇବା ତ ଦରକାର ! ତେଣୁ ଦୟାକରି ଶୀଘ୍ର ଚାଲ ।"

ଏ କଥା ଶୁଣି ଶିକାରୀ ବଡ଼ ଡରିଗଲା । ସେ କହିଲା, "ତୁମ ମା'ଙ୍କ ପରି ଜଣେ ଉଚ୍ଚ କୁଳର ମହିଳା କିମିତି ମୋ ପରି ପାହାଡ଼ ଜଙ୍ଗଲର ଶିକାରୀକୁ ତାଙ୍କ ଘରେ ପୂରାଇବେ ?"

"ସେ ସବୁ ତୁମକୁ ଚାହିଁ ବସିଛନ୍ତି ! ଚାଲ, ଚାଲ, ଶୀଘ୍ର ଚାଲ !"

ଶିକାରୀ ସହିତ ସ୍ୱଚ୍ଛୁଭର ଗୋଟିଏ ଝରଣାରେ ମୁହଁ ହାତ ଧୋଇସାରି ପଶ୍ଚିମ ଦିଗର ନଗରକୁ ଚାଲିଲେ । ଏତେ ବଡ଼ ସହରର କୋଠାବାଡ଼ି ଦେଖି ସେହି ଜଙ୍ଗଲୀ ଶିକାରୀ ବଡ଼ ଅବାକାବା ହେଉଥାଏ । କିନ୍ତୁ ସ୍ୱଚ୍ଛୁଭର ତାକୁ ବଡ଼ ବଡ଼ ଦର୍ଶନୀୟ ଜିନିଷ ଦେଖାଇ ଦେଖାଇ ତୁରନ୍ତ ଯାଇ ପହଞ୍ଚିଲା ତାଙ୍କ ଘର ଦୁଆରରେ । କାରକୁ ହାଙ୍ଗରେ ଧରି ସ୍ୱଚ୍ଛୁଭରର ମା ଆସି ଶିକାରୀକୁ କହିଲେ, "ଆସ ଆସ, ଆମେ ସବୁ ତୁମକୁ ଅନାଇ ରହିଛୁ ! ଆମ ବାଡ଼ରେ କାଟି କଦଳୀପତ୍ର ପକାଇ ସବୁ ଜିନିଷ ବାଢ଼ିକୁଣ୍ଡି ଥୋଇ ସାରିଛୁ । ମୁଁ ତୁମଲାଗି ଭାତ, ଗୋଲମରିଚ ପାଣି ଆଉ ଦହି ରଖିଛୁ । ତୁମେମାନେ ଚଞ୍ଚଳ ଗଣ୍ଡେ ଖାଇ ଦେଇ ଗାଁକୁ ବାହାରିପଡ଼ । ନହେଲେ କାରି-ମା ବିଚାରୀ ତୁମ ଲାଗି ଖୁବ୍ ବ୍ୟସ୍ତ ହେଉଥିବ ।"

ସ୍ୱଚ୍ଛୁଭର ଓ ତା'ର ମା ଏ ଦୁହିଁଙ୍କୁ ନେଇ ବସାଇଲେ; ବାଢ଼ିବାଢ଼ି ପେଟେ ଖୁଆଇଲେ । ସେମାନେ ଖାଉଥିବାବେଳେ ସ୍ୱଚ୍ଛୁଭର କଳା କଜଳପାତି ଆଉ ବଣର ହରିଣ କଥା, ପୁଣି କେତେ କ'ଣ ପଚାରୁଥାଏ । କିନ୍ତୁ ଏଡ଼େ ବଡ଼ଲୋକ ଘରକୁ ଆସି ଜଙ୍ଗଲୀ ଶିକାରୀ ବିଚରା ଏକଦମ୍ ମୂକ ପାଲଟି ଯାଇଥାଏ । କାରି ପଦେ ପଦେ ଉତ୍ତର ମାତ୍ର ଦେଉଥାଏ ।

ବିଦା ହେବା ପୂର୍ବରୁ ଶିକାରୀ ସେହି ଭଦ୍ରମହିଳାଙ୍କ ଗୋଡ଼ତଳେ ପଡ଼ି ପ୍ରଣାମ କଲା । ସେ ଅତି କଅଁଳ କଣ୍ଠରେ କହିଲେ, "ତୁମେ ଘରେ ପହଞ୍ଚୁ ପହଞ୍ଚୁ ରାତି ନହେଲେ ରକ୍ଷା ।" ତାଙ୍କର ଏପରି ମଧୁର କଥା ଶୁଣି ଶିକାରୀର ଟିକେ ସାହସ ହେଲା । ସେ କହିଲା, "ମା, ଆମଲାଗି ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । ମୋ ପାଖେ ଝକମକ ପଥର ଅଛି । ମୁଁ ନିଆଁ ହୁଳା ଧରି ଚାଲିଲେ ଜନ୍ତୁଜାନ୍ତୁ ମୋଟେ ପାଖ ମାଡ଼ିବେ ନାହିଁ ।"

ତହୁଁ ବାପ ପୁଅ ଦୁହେଁ ଘରକୁ ବାହୁଡ଼ିଲେ ।

# ଏହି ପୁସ୍ତକମାଳାରେ ପ୍ରକାଶିତ ଅନ୍ୟାନ୍ୟ ପୁସ୍ତକ

| | ଲେଖକ | ଅନୁବାଦକ |
|---|---|---|
| ବାପୁ (ଦୁଇ ରଙ୍ଗରେ) | — ଏଫ୍. ସି. ଫ୍ରିଡାଲ୍ | — ଦେବେନ୍ଦ୍ର ଶତପଥୀ |
| କାଶ୍ମୀର | — ମାନ ସିଂ | — ପଠାନ୍ ଦାସ (ଆକାଶବାଣୀ) |
| ପକ୍ଷୀ ଜଗତ | — ଜମାଲ ଅରା | — ଅବକାଶ ଜେନା |
| ଆମ ନଦୀମାନଙ୍କର କାହାଣୀ (ପ୍ରଥମ ଖଣ୍ଡ) | — ଲୀଳା ମଜୁମଦାର | — ଦେବେନ୍ଦ୍ର ଶତପଥୀ |
| ଆମ ନଦୀମାନଙ୍କର କାହାଣୀ (ଦ୍ୱିତୀୟ ଖଣ୍ଡ) | — ଅର୍. ଶଶିପ୍ରଭା | — ନୃସିଂହ ଚରଣ ସାହୁ |
| ଶୁଙ୍କୁ ଶୁଙ୍କ | — ଖାନ ସିଂ | — ଜାନକୀବଲ୍ଲଭ ମହାନ୍ତି |
| ଅଶୋକ ଓ ଅନନ୍ତର କାହାଣୀ | — ମନୋଜ ଦାସ | — ମନୋଜ ଦାସ |
| ସ୍ୱର୍ଗ ଭ୍ରମଣ | — ଭାରତୀ ସରଭ୍ | — ପଠାନ୍ ଦାସ (ଆକାଶବାଣୀ) |
| ସେମାନେ ଦେଖିଥିବା ଭାରତ | — କେ. ସି. ଖାନ୍ନା | — ଦେବେନ୍ଦ୍ର ଶତପଥୀ |
| ଆମ ଲେଜପଣ | — ଜଗଜିତ୍ ସିଂ | — ଅବକାଶ ଜେନା |
| ଘର ନାଟକ କରିବା | — ଉମା ଆନନ୍ଦ | — ଚିତ୍ତରଞ୍ଜନ ଦାସ |
| ଆମ ସନ୍ଥା କାହାଣୀ (ପ୍ରଥମ ଖଣ୍ଡ) | — ବିଷ୍ଣୁ ପ୍ରଭାକର | — ବିଜୟ କୁମାର ଦାଶ |
| ଆମ ସନ୍ଥା କାହାଣୀ (ଦ୍ୱିତୀୟ ଖଣ୍ଡ) | — ସୁମଙ୍ଗଲ୍ ପ୍ରକାଶ | — ସୁଲେଖା ପଟ୍ଟନାୟକ |
| ଟିଙ୍କୁର ନାନାର ପରିବାର | — ଏମ୍. ଡି. ଚତୁର୍ବେଦୀ | — ଚନ୍ଦ୍ରମୁଖୀ ହେମଚାନ୍ଦ ମିଶ୍ର |
| ବହୁତ ଦିନ ତଳେ (ପ୍ରଥମ ଖଣ୍ଡ) | — ଏମ୍ ଶ୍ରେୟସୀ ଓ ଟି. ଏମ୍. ଯୋଷୀ | — କାଳିନ୍ଦୀ ଚରଣ ପାଣିଗ୍ରାହୀ |
| ବହୁତ ଦିନ ତଳେ (ଦ୍ୱିତୀୟ ଖଣ୍ଡ) | — " | — ଜିତେନ୍ଦ୍ର ନାରାୟଣ ପଟ୍ଟନାୟକ |
| ଯୁଗ ଯୁଗର କାହାଣୀ | — ଶାନ୍ତା ରଙ୍ଗାଚାରୀ | — ବିଜୟ କୁମାର ଦାଶ |
| ଲେହଡ଼ା ଓ ନାଟ୍ୟ | — କୃଷ୍ଣ ଚୈତନ୍ୟ | — ଜ୍ୟୋତ୍ସ୍ନା ମିଶ୍ର |
| ଜଳପାଣି | — ଲୀଳା ମଜୁମଦାର | — ଭାଜନ ପାଣି |
| ସାହସିକତାର କାହାଣୀ | — ରମେନ୍ଦ୍ର ଅବସ୍ଥୀ | — ସ୍ନେହଲତା ରଥ |
| ଫୁଲ ଓ ମହୁମାଛି | — ଅଶୋକ ଦାଭର୍ | — ବିଜୟ କୁମାର ଦାଶ |
| ମୋର | — ମୁଲ୍କରାଜ ଆନନ୍ଦ | — ସ୍ନେହଲତା ରଥ |
| ଭାରତରେ ହରିଣ | — ସରଜିତ୍ ସାନ୍ୟାଲ୍ | — ନୃସିଂହ ପ୍ରସାଦ ମିଶ୍ର |
| ଅଯୋଧ୍ୟାର ଯୁବରାଜ | — ହଂସା ମେହେଟା | — ମିଳା ଦାସ |
| ଅମର ବାହିନୀ | — ମନୋଜ ଦାସ | — ମନୋଜ ଦାସ |
| ବୃକ୍ଷ ଜଗତ | — ରସ୍କିନ୍ ବଣ୍ଡ୍ | — ଶ୍ରୀଧର ଦାସ |
| ଅଲିମିତ୍ର | — ମେରିଲିନ୍ ଡିମିଲେ | — ରମେନ୍ଦ୍ର ଦାସ |
| ସୋନାର ବାଳକ | — ତାର ଚିତ୍ରଣା | — ଶାନ୍ତି ଦାସ |
| ସବୁଜ ସାଥୀ, ସବୁଜ ମିତ୍ର | — ରମାଶଙ୍କର ଯୋଷୀ | — ଚନ୍ଦ୍ରିକା ମହାପାତ୍ର |
| ରୂପା | — ମିତି ପଟେଲ୍ | — ବିଜୟକୁମାର ଦାଶ |
| କେତୋଟି ପ୍ରଭାତକାରୀ ଉଦ୍‌ଯାପନ (ଦୁଇ ରଙ୍ଗରେ) | — ମିର୍ ନଜାବତ୍ ଅଲି | — ମନୋରଞ୍ଜନ ପ୍ରସାଦ ସିଂହ |
| ଆସ ଯିବା ଦେଖି ଚିଡ଼ିଆଖାନା | — ରସ୍କିନ୍ ବଣ୍ଡ୍ | — ରମାପ୍ରସାଦ ମହାନ୍ତି |
| ଲେଟ୍‌ଜେସ୍‌ର କାହାଣୀ | — ତ୍ରିଷ୍ଣା ସବ୍ୟାନନ୍ଦ | — ବସନ୍ତକୁମାର ଧଳ |
| ✓କ୍ରିକେଟ୍ | — ବିଜୟ ମର୍ଚେଣ୍ଟ | — ରବି ସାହୁ |
| ଡାକଟିକଟର ମନୋହର କାହାଣୀ | — ସତ୍ୟ ପ୍ରସାଦ ଶ୍ରୀବାସ୍ତବ | — ସୁରେନ୍ଦ୍ର ଚନ୍ଦ୍ର ମହାନ୍ତି |
| ଭାରତ କିପରି ସ୍ୱାଧୀନତା ପାଇଲା | — କୃଷ୍ଣ ବୈଦ | — ରାମ ପ୍ରସାଦ ମହାନ୍ତି |
| ଏକ କଳିର ସ୍ୱପ୍ନ | — ମହାଶ୍ୱେତା ଦେବୀ | — ଚିତ୍ତରଞ୍ଜନ ଦାସ |
| ଆମ ନୌବାହିନୀ | — ଆର୍. ଏନ୍. ଗୁପ୍ତ | — ନୃସିଂହ ଚରଣ ସାହୁ |
| ସିନେମା କେମିତି ହୁଏ | — ଖ୍ୱାଜା ଅହମଦ ଅବ୍ବାସ | — ଘନଶ୍ୟାମ ମହାପାତ୍ର |
| ଆମ ବାୟୁ ସେନା | — ପି. ଏଲ୍. ଧାଣ୍ଡୋଲେ | — ନିତ୍ୟ କିଶୋର କାନୁନ୍‌ଗୋ |
| ପ୍ରେମଚନ୍ଦ | — ଅମୃତ ରାୟ | — ପଙ୍କଜ କୁମାର ତ୍ରିପାଠୀ |
| ଟିଅର୍ ରଥ | — ଉମା ଆନନ୍ଦ | ରାମ ପ୍ରସାଦ ମହାନ୍ତି |

ପ୍ରତ୍ୟେକ ବହିର ମୂଲ୍ୟ ଟ 2.50

ଏହି ପୁସ୍ତକଗୁଡ଼ିକ ୧୨ଟି ଭାରତୀୟ ଭାଷା ଓ ଇଂରାଜୀରେ ମିଳୁଅଛି ।

